# ଭଗତ ସିଂହ



# କାହିଁକି ମୁଁ ଜଣେ ନାସ୍ତିକ

ଉପକ୍ରମଣିକା: ବିପିନ ଚନ୍ଦ୍ର
ଅନୁବାଦ: ହୃଦାନନ୍ଦ ରାୟ

*ବିବିଧ ପୁସ୍ତକମାଳା*

# କାହିଁକି ମୁଁ ଜଣେ ନାସ୍ତିକ


ଭଗତ ସିଂହ

ଉପକ୍ରମଣିକା
ବିପିନ ଚନ୍ଦ୍ର

ଅନୁବାଦ
ହୃଦାନନ୍ଦ ରାୟ





ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ସୂଚୀପତ୍ର

ପ୍ରାକ୍ କଥନ vii

ଉପକ୍ରମଣିକା ix

କାହିଁକି ମୁଁ ଜଣେ ନାସ୍ତିକ 1

''ଦି ଡ୍ରିମ୍‌ଲାଣ୍ଡ''ର ମୁଖବନ୍ଧ 17

# ପ୍ରାକ୍ କଥନ

ଭଗତ ସିଂହ ଥିଲେ ଜଣେ ମହାନ୍ ଦେଶପ୍ରେମୀ ଓ କ୍ରାନ୍ତିକାରୀ ବିପ୍ଲବୀ । କିନ୍ତୁ ସେ ମଧ୍ୟ ଥିଲେ ବିଶାଳ ପ୍ରଜ୍ଞାର ଅଧିକାରୀ, ଅତିକାୟ ବିଦ୍ୱାନ୍ । ବାଲ୍ୟକାଳରୁ ସେ ନିଜକୁ ପୁସ୍ତକମାନଙ୍କ ମଧ୍ୟରେ ନିମଜ୍ଜିତ କରି ରଖିଥିଲେ । ଲାଲା ଲାଜପତ୍ ରାୟଙ୍କ ପ୍ରତିଷ୍ଠିତ ଦ୍ୱାରକା ଦାସ ଗ୍ରନ୍ଥାଳୟକୁ ସେ ନିଜର ବାସଗୃହ ବୋଲି ବିବେଚନା କରୁଥିଲେ । ତାଙ୍କର ସାଥୀମାନେ ଜଣାଇ ଦେଇଛନ୍ତି ଯେ ତାଙ୍କ କୁର୍ତ୍ତା (କମିଜ) ପକେଟ ବହିରେ ପୂର୍ଣ୍ଣ ହୋଇ ରହୁଥିଲା । ପାଖରେ ବହି ନଥାଇ ତାଙ୍କୁ କେବେହେଲେ ଦେଖିବାକୁ ମିଳୁନଥିଲା । ଅଧ୍ୟୟନ ଲାଗି ତାଙ୍କର ଏ ଆସକ୍ତି ସେ କାରାବାସକୁ ସୁଦ୍ଧା ଘେନିଯାଇଥିଲେ । ଜୀବନର ଶେଷ ଦୁଇବର୍ଷ ସେଠାରେ ସେ ଅତିବାହିତ କରିଥିଲେ । ଚବିଶ ବର୍ଷ ବୟସ ହେବା ପୂର୍ବରୁ ସେ ମୃତ୍ୟୁବରଣ କଲେ । ତାଙ୍କ ଜେଲ ଡାଏରୀରୁ ଜଣାଯାଏ, ଜେଲ୍‌ରେ ଥିବାବେଳେ ସେ କେତେ ବହିରୁ ଟିପ୍ପଣୀ ରଖିଥିଲେ । ନ୍ୟାୟାଳୟରେ ତାଙ୍କର ବିଚାର ସମୟରେ ସେ ଯାହା ସବୁ କହିଥିଲେ, ପତ୍ର ପତ୍ରିକାକୁ, ବନ୍ଧୁମାନଙ୍କୁ ଓ ସମ୍ପର୍କୀୟମାନଙ୍କୁ ସେ ଯାହା ଲେଖିଥିଲେ, ତାହା ତାଙ୍କ ମାନସିକ ଗୁଣବତ୍ତା ଏବଂ ସମାଜ ତଥା ରାଜନୈତିକ ଆନ୍ଦୋଳନ ବିଷୟରେ ବ୍ୟାପକ ଅବବୋଧର ପରିଚୟ ଦେଇଅଛି । ସେ କ୍ରମଶଃ ରାଜଦ୍ରୋହୀ ହିଂସା ଆଚରଣ ଓ ବ୍ୟକ୍ତିଗତ ଶୂରତାରୁ ମାର୍କ୍ସବାଦ ପ୍ରତି ଆକୃଷ୍ଟ ହୋଇ ଗତି କରିଥିଲେ । ଭଗତ ସିଂହ ଜେଲ୍‌ରେ ଚାରିଖଣ୍ଡ ପୁସ୍ତକ ଓ ଖଣ୍ଡେ ପାମ୍ପଲେଟ୍ ଲେଖିଥିଲେ । ଦୁର୍ଭାଗ୍ୟକୁ, ଜେଲ୍‌ରୁ ଗୋପନରେ ଅଣାଯାଇଥିବା ସେହି ଚାରିଖଣ୍ଡ ପୁସ୍ତକ ହଜିଯାଇଛି । ସେ ପୁସ୍ତକକୁ ପାଖରେ ରଖିଲେ ଗୁରୁତର ଦଣ୍ଡ ଭୋଗ କରିବାକୁ ହେବ ଏହି ଭୟରୁ ତାହା ବହୁବାର ହସ୍ତାନ୍ତରିତ ହେଲା, ଏକ ହାତରୁ ଅନ୍ୟ ହାତକୁ ଯିବାକୁ ପଡ଼ିଲା ଓ ଶେଷରେ ହଜିଗଲା ।

ଦେଶମାତୃକା ସେବାରେ ତାଙ୍କ ଆତ୍ମବଳିଦାନର କିଛିଦିନ କିମ୍ବା କିଛି ସପ୍ତାହ ପୂର୍ବରୁ ସେ ଲେଖିଥିବା "କାହିଁକି ମୁଁ ଜଣେ ନାସ୍ତିକ" ପାମ୍ଫଲେଟ୍‌ଟି ଗୋପନରେ ତାଙ୍କ ପିତାଙ୍କ ହସ୍ତଗତ ହେଲା ଓ ତାହା ୧୯୩୧ ମସିହାରେ ଲାଲା ଲାଜ୍‌ପତ୍ ରାୟଙ୍କ ଦ୍ୱାରା ପ୍ରତିଷ୍ଠିତ ଓ ଲାଲା ଫକୀରଚାନ୍ଦଙ୍କ ଦ୍ୱାରା ସମ୍ପାଦିତ "ଦି ପିପୁଲ" ନାମକ ସାପ୍ତାହିକ ପତ୍ରିକାରେ ପ୍ରକାଶିତ ହେଲା । ପାମ୍ଫଲେଟ୍‌ଟିର ପ୍ରକାଶ ପରେ ପତ୍ରିକା ପ୍ରକାଶନକୁ ସରକାରଙ୍କ

ତରଫରୁ ନିଷେଧ କରିଦିଆଗଲା, କିନ୍ତୁ ତାହା ବେଆଇନ୍ ଭାବରେ କେତେବାର ମୁଦ୍ରିତ ହୋଇ ବେଳେବେଳେ ବିନଷ୍ଟ ଅବସ୍ଥାରେ ବିତରିତ ହୋଇଥିଲା ।

ଭଗତ ସିଂହଙ୍କୁ ଜଣେ ପୁରୁଖା କ୍ରାନ୍ତିକାରୀ ବ୍ୟକ୍ତି, ରାମଶରଣ ଦାସ ଅନୁରୋଧ କରିଥିଲେ ଯେ ତାଙ୍କ ଲିଖିତ କବିତା ସଂକଳନ ''ଦି ଡ୍ରିମ୍‌ଲାଣ୍ଡ'' ପାଇଁ ଭଗତ ସିଂହ ଗୋଟିଏ ଉପକ୍ରମଣିକା ଲେଖିଦେବେ । ''କାହିଁକି ମୁଁ ଜଣେ ନାସ୍ତିକ'' ଏବଂ ''ଦି ଡ୍ରିମ୍‌ଲାଣ୍ଡ''ର ମୁଖବନ୍ଧ ଉଭୟ ଯେ ଭଗତ ସିଂହଙ୍କ ମାନସିକ ଗୁଣବତ୍ତାର କେବଳ ପରିଚୟ ଦିଏ ତାହା ନୁହେଁ, ତାଙ୍କର ବ୍ୟାପକ ଅଧ୍ୟୟନ, ଜଟିଳ ସମସ୍ୟାମାନଙ୍କୁ ବୁଝିପାରିବା ଶକ୍ତି ଏବଂ ସହଜ ବୋଧ ଭାଷାରେ ତାହାକୁ ପ୍ରକାଶ କରିବା ଦକ୍ଷତା ତଥା ପୂର୍ବତନ କ୍ରାନ୍ତିକାରୀ ମାନଙ୍କ ପାଇଁ ସମବେଦନା ଓ ଦରଦକୁ ପ୍ରକାଶିତ କରେ ଯଦିବା ସେ ସେମାନଙ୍କ ସହିତ ସବୁ ବିଷୟରେ ଏକମତ ନ ଥିଲେ । ଉଦାହରଣ ସ୍ୱରୂପ, ଧର୍ମୀୟ ଭାବନାରେ ବିଶ୍ୱାସ କରୁଥିବା କ୍ରାନ୍ତିକାରୀ ମାନଙ୍କଠାରୁ ସେ ମୌଳିକ ଭାବରେ ଭିନ୍ନମତ ପୋଷଣ କରୁଥିଲେ ।

ଦି ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଭଗତ ସିଂହଙ୍କ ଜନ୍ମ ଶତବାର୍ଷିକୀ ଏବଂ ଦେଶମାତୃକା ଲାଗି ବଳିଦାନର ପଚସ୍ତରୀ ବର୍ଷ ପୂର୍ତ୍ତି ଉପଲକ୍ଷେ ସେ ସେହି ଦୁଇଟି ରଚନାକୁ ସ୍ୱତନ୍ତ୍ର ଅବକାଶରେ ଗର୍ବର ସହିତ ଭାରତର ଜନସାଧାରଣଙ୍କୁ ଅର୍ପଣ କରୁଛି ।

ଭଗତ୍ ସିଂହଙ୍କ ସାଥୀ ଜେ.ଏନ୍. ସାନ୍ୟାଲଙ୍କ ରଚିତ ଭଗତ୍ ସିଂହଙ୍କ ଆତ୍ମଚରିତକୁ ହିନ୍ଦୀ ଭାଷାରେ ନ୍ୟାସନାଲ ବୁକ୍ ଟ୍ରଷ୍ଟ ପ୍ରକାଶ କରିଛି । ଭଗତ ସିଂହଙ୍କ ବଳିଦାନ ବିଷୟରେ ହିନ୍ଦୀ ଭାଷାରେ ରଚିତ ''ଫାସୀ ଲାହୋର କି'' ଶୀର୍ଷକ ଏକ ଲୋକପ୍ରିୟ ଗୀତ ଓ କବିତା ସଂକଳନ ମଧ୍ୟ ପ୍ରକାଶିତ ହୋଇଛି । ପଞ୍ଜାବୀ ଭାଷାରେ ସେହିଭଳି ଏକ ସଂକଳନ ''ସହୀଦ-ଏ-ଆଜମ୍ ଭଗତ ସିଂହ କାବ'' ଟ୍ରଷ୍ଟ ତରଫରୁ ଆତ୍ମପ୍ରକାଶ କରିଛି । ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ ଆଶା କରୁଛି ଭଗତ ସିଂହଙ୍କ ଭାଷଣ, ଲେଖା ଏବଂ ପତ୍ରାବଳୀକୁ ଅଧିକରୁ ଅଧିକ ଭାବରେ ସମସ୍ତ ଭାରତୀୟ ଭାଷାମାନଙ୍କରେ ପ୍ରକାଶିତ କରିବା ।

**ବିପିନ ଚନ୍ଦ୍ର**
ଅଧ୍ୟକ୍ଷ
ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ଉପକ୍ରମଣିକା

ଭଗତ ସିଂହ ଭାରତର କେବଳ ସର୍ବଶ୍ରେଷ୍ଠ ସ୍ୱାଧୀନତା ସଂଗ୍ରାମୀ ଓ କ୍ରାନ୍ତିକାରୀ ସମାଜବାଦୀମାନଙ୍କ ମଧ୍ୟରୁ ଜଣେ ନଥିଲେ; ସେ ଥିଲେ ପ୍ରାରମ୍ଭ କାଳରେ ଅନ୍ୟତମ ମାର୍କ୍ସବାଦୀ ଚିନ୍ତାନାୟକ ଓ ସେହି ଆଦର୍ଶଗ୍ରାହୀ ବ୍ୟକ୍ତିତ୍ୱ । ଦୁର୍ଭାଗ୍ୟକୁ ତାଙ୍କର ଏହି ଶେଷ ବିଭାବ ବିଷୟରେ ଲୋକମାନଙ୍କର ଅପେକ୍ଷାକୃତ ଅଳ୍ପ ଜ୍ଞାନ ଥିବାରୁ ତାଙ୍କୁ ପ୍ରତିକ୍ରିୟାବାଦୀ, ରଢ଼ିବାଦୀ ଏବଂ ସାମ୍ପ୍ରଦାୟିକତାବାଦୀ ବୋଲି ଭୁଲ୍‌ବଶତଃ ଏବଂ ଅନୁଚିତ ଭାବରେ ଆଖ୍ୟାତ କରି ନିଜ ନିଜ ରାଜନୈତିକ ଓ ଆଦର୍ଶଗତ ମତଲବ ରଖି ତାଙ୍କ ସହିତ ଚନ୍ଦ୍ରଶେଖର ଆଜାଦଙ୍କ ପରି ତାଙ୍କ ସାଥୀମାନଙ୍କ ନାମ ଓ ଯଶକୁ ନିଜ ସ୍ୱାର୍ଥରେ ବ୍ୟବହାର କରାଗଲା ।

ତରୁଣ ଅବସ୍ଥାରେ ମାତ୍ର ତେଇଶି ବର୍ଷ ବୟସରେ ଭଗତ ସିଂହ ମୃତ୍ୟୁବରଣ କଲେ । ତାଙ୍କର ରାଜନୈତିକ ଚିନ୍ତନ ଏବଂ କର୍ମ ଖୁବ୍ ପ୍ରାରମ୍ଭରୁ ବିକଶିତ ହେବାକୁ ଲାଗିଲା ଓ ସେ ଗାନ୍ଧୀବାଦୀ ଜାତୀୟତାବାଦରୁ କ୍ରାନ୍ତିକାରୀ ଅରାଜକତାବାଦ ପଥକୁ ଚାଲି ଆସିଲେ । କିନ୍ତୁ ୧୯୨୭-୨୮ ମସିହା ବେଳକୁ ସେ କ୍ରାନ୍ତିକାରୀ ବ୍ୟକ୍ତିଗତ ଶୂରତା ଅପେକ୍ଷା ମାର୍କ୍ସବାଦ ପ୍ରତି ଅଧିକ ଆକୃଷ୍ଟ ହୋଇଗଲେ । ୧୯୨୫ ରୁ ୧୯୨୮ ମଧ୍ୟରେ ଭଗତ ସିଂହ ବହୁ ଗ୍ରନ୍ଥ ସହିତ ବିଶେଷ ଭାବରେ ରୁଷୀୟ କ୍ରାନ୍ତି ଆନ୍ଦୋଳନ ଓ ସୋଭିଏତ୍ ସଂଘ ବିଷୟକ ଗ୍ରନ୍ଥମାନଙ୍କୁ ଅଧ୍ୟୟନ କରିଥିଲେ । ଯଦିବା ସେତେବେଳେ ଏସବୁ ପୁସ୍ତକ ପାଇବା ଥିଲା ଏକ କ୍ରାନ୍ତିକାରୀ କଠିନ କର୍ମ । ୧୯୨୦ ଦଶକରେ ଭଗତ୍ ସିଂହ ଭାରତର କ୍ରାନ୍ତି ଆନ୍ଦୋଳନ, ସଶସ୍ତ୍ର ବିଦ୍ରୋହ ଏବଂ ମାକ୍ସର୍ବାଦ ବିଷୟରେ ବହୁ ଗ୍ରନ୍ଥ ଅଧ୍ୟୟନ କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ । ସେ ତାଙ୍କର ସହ କ୍ରାନ୍ତିକାରୀ ଓ ଯୁବସାଥୀମାନଙ୍କ ମଧ୍ୟରେ ଅଧ୍ୟୟନ ଓ ଚିନ୍ତନ ଅଭ୍ୟାସକୁ ପ୍ରୋତ୍ସାହିତ କରୁଥିଲେ । ତାଙ୍କର ବିଚାରବେଳେ ଲାହୋର ଉଚ୍ଚ ବିଚାରାଳୟରେ ସେ ଦୃଢ଼ୋକ୍ତି କରି କହିଥିଲେ, ''ବିପ୍ଳବର ତରବାରୀ ଚିନ୍ତନର ଶାଣ ପଥରରେ ପଜା ଯାଇଛି ।'' ୧୯୨୮ ଶେଷ ବେଳକୁ ସେ ଏବଂ ତାଙ୍କ ସାଥିମାନେ ସମାଜବାଦକୁ ସେମାନଙ୍କର ଉଦ୍ୟମର ଚୂଡ଼ାନ୍ତ ବସ୍ତୁ ଭାବରେ ଗ୍ରହଣ କରିସାରିଥିଲେ ଏବଂ ତାଙ୍କ ସଂଗଠନର ନାମ 'ହିନ୍ଦୁସ୍ଥାନ ରିପବ୍ଲିକ୍ ଆସୋସିଏସନ୍'ରୁ 'ହିନ୍ଦୁସ୍ଥାନ ସୋସାଲିଷ୍ଟିକ୍ ରିପବ୍ଲିକାନ୍ ଆସୋସିଏସନ୍' କୁ ପରିବର୍ତ୍ତନ କରିଦେଇଥିଲେ ।

ସେହିଦିନଠାରୁ ଜୁନ୍ ୧୯୨୯ରେ ସେ ରାଜବନ୍ଦୀ ହେବା ପର୍ଯ୍ୟନ୍ତ ଏବଂ ତା'ପରେ

ମଧ୍ୟ ଭଗତସିଂହ ମାର୍କ୍ସବାଦକୁ ଆୟତ୍ତ କରି ତହିଁରେ ଦଖଲ ଆଣିବା ପାଇଁ ତାଙ୍କ ପ୍ରଚଣ୍ଡ ପ୍ରୟାସକୁ ଅବ୍ୟାହତ ରଖିଥିଲେ । ଏହି ପ୍ରକ୍ରିୟାରେ ସେ ସମସାମୟିକ ମତବାଦମାନଙ୍କ ସହିତ ନିଜ ମତର ମଧ୍ୟ ପରୀକ୍ଷା କରି ନେଉଥିଲେ । ଜାତୀୟବାଦୀ ଆନ୍ଦୋଳନ, ସମକାଳୀନ ପୃଥିବୀ ବ୍ୟାପି କ୍ରାନ୍ତିକାରୀ ପ୍ରକ୍ରିୟା, ଅରାଜକତାବାଦ, ସମାଜବାଦ, ହିଂସା ଓ ଅହିଂସା, କ୍ରାନ୍ତିକାରୀ ଆତଙ୍କବାଦ, ଧର୍ମ, ସାମ୍ପ୍ରଦାୟିକତା, ପୂର୍ବବର୍ତ୍ତୀ କ୍ରାନ୍ତିକାରୀ ଓ ସମକାଳୀନ ରାଷ୍ଟ୍ରବାଦୀମାନଙ୍କ ମତବାଦ ସହିତ ନିଜ ମତବାଦକୁ ମଧ୍ୟ ନିପୁଣତାର ସହିତ ପରୀକ୍ଷା କରି ନେଇଥିଲେ ।

ଏହା ଆମ ଦେଶବାସୀମାନଙ୍କ ପାଇଁ ଏକ ମହାନ ଦୁଃଖଦ ଘଟଣା ଯେ ଏଭଳି ପ୍ରତିଭାଧର ବ୍ୟକ୍ତିଙ୍କୁ ଉପନିବେଶବାଦୀ ଶାସକମାନେ ପ୍ରତିବନ୍ଧକତା କରିଦେଲେ ।

ଏହି କ୍ଷୁଦ୍ର ପୁସ୍ତିକାରେ ଭଗତ ସିଂହଙ୍କ ଦ୍ୱାରା ରଚିତ ଦୁଇଟି ଅପେକ୍ଷାକୃତ ଅଜ୍ଞାତ ଲେଖା ପାଠକମାନଙ୍କ ପାଖରେ ଉପସ୍ଥାପିତ କରାଯାଇଅଛି । ତାହା ଭଗତସିଂହଙ୍କ ଦ୍ୱାରା କାରାବାସ ସମୟରେ ୧୯୩୦-୩୧ ରେ ରଚିତ ହୋଇଛି । ସେ ସମୟରେ ସେ ଫାଶୀକୁ ପ୍ରତୀକ୍ଷା କରୁଥିଲେ । ଏହି ଲେଖା ଦୁଇଟିରେ ଏବଂ ଅସଂଖ୍ୟ ପତ୍ରମାନଙ୍କରେ ତଥା ବକ୍ତବ୍ୟମାନଙ୍କରେ ସେ ସ୍ପଷ୍ଟତୟା ମାର୍କ୍ସଙ୍କ ମତବାଦ ପ୍ରତି ପ୍ରତିବଦ୍ଧ ଜଣେ କ୍ରାନ୍ତିକାରୀ ବ୍ୟକ୍ତି ଭାବରେ ପ୍ରତିଭାତ ହୋଇଛନ୍ତି । ମାର୍କ୍ସବାଦର ଜଟିଳ ପଦ୍ଧତିକୁ ବ୍ୟାବହାରିକ ପ୍ରୟୋଗ କରିବା ଲାଗି ତାଙ୍କର ସାମର୍ଥ୍ୟ ଥିଲା ।

## (୧)

ପ୍ରଥମ ଲେଖାରେ ଭଗତ ସିଂହ ଧର୍ମ ଏବଂ ନାସ୍ତିକତାର ବିଚାର କରିଛନ୍ତି । ତହିଁରେ ସେ ନାସ୍ତିକବାଦ ପଥରେ ପାଦ ବଢ଼ାଇଛନ୍ତି । ତାଙ୍କ ବାଲ୍ୟକାଳରେ ସେ ଧର୍ମୀୟ ଭାବନା ଏବଂ ପରେ ତାଙ୍କ ପୂର୍ବବର୍ତ୍ତୀ ବିପ୍ଲବୀ ଶଚୀନ୍ଦ୍ର ନାଥ ସାନ୍ୟାଲଙ୍କ କ୍ରାନ୍ତିକାରୀ ଆତଙ୍କବାଦ ଦ୍ୱାରା ପ୍ରଭାବିତ ହୋଇଥିଲେ । ସାନ୍ୟାଲଙ୍କ ପୁସ୍ତକ "ବନ୍ଦୀ ଜୀବନ" ୧୯୨୦ ଦଶକରେ ସମସ୍ତ କ୍ରାନ୍ତିବାଦୀମାନଙ୍କ ପାଇଁ ମୌଳିକ ପାଠ୍ୟ ପୁସ୍ତକ ରୂପେ ବିବେଚିତ ହେଉଥିଲା । ପୂର୍ବବର୍ତ୍ତୀ ଏହି କ୍ରାନ୍ତିବାଦୀମାନେ ଧର୍ମ ଓ ରହସ୍ୟବାଦକୁ ଆଶ୍ରୟ କରିଥିଲେ । ତହିଁରୁ ଆଧ୍ୟାତ୍ମିକ ବଳ ଆହରଣ କରି ତାଙ୍କର ଅତିଶୟ ସାହସିକ କାର୍ଯ୍ୟକଳାପରେ ତାହା ପ୍ରକଟ କରାଉଥିଲେ । ଦୁଇଟିଯାକ ଲେଖାରେ ଭଗତସିଂହଙ୍କର ପୂର୍ବବର୍ତ୍ତୀ କ୍ରାନ୍ତିକାରୀମାନଙ୍କ ଆଭିମୁଖ୍ୟ ଓ ଦୃଷ୍ଟିଭଙ୍ଗୀ ବିଷୟରେ ପୂର୍ଣ୍ଣ ଅବବୋଧ ଥିଲା ଏବଂ ସେମାନଙ୍କ ଧାର୍ମିକତାର ଉତ୍ସ କେଉଁଠି ତାହା ତହିଁରେ ସେ ନିରୂପଣ କରି ଯାଇଛନ୍ତି । ସେ ଦର୍ଶାଇଛନ୍ତି ଯେ ନିଜର ରାଜନୈତିକ କାର୍ଯ୍ୟକଳାପରେ ବୈଜ୍ଞାନିକବୋଧ ଅଭାବରୁ ସେମାନେ ଅଯୌକ୍ତିକ ଧର୍ମୀୟ ବିଶ୍ୱାସ ଏବଂ ରହସ୍ୟବାଦରୁ ଉପଲବ୍ଧ ଆତ୍ମିକ ବଳରେ ନିଜକୁ ସମ୍ଭାଳି ବ୍ୟକ୍ତିଗତ ପ୍ରଲୋଭନ ଓ ବିଷାଦରୁ ମୁକ୍ତ ହୋଇ ନିଜର ଶାରୀରିକ ସ୍ୱାଚ୍ଛନ୍ଦ୍ୟ, ପରିବାର, ଏପରିକି ଜୀବନକୁ

ବଳିଦେବା ପାଇଁ ସମର୍ଥ ହୋଇ ପାରୁଥିଲେ । ଯେତେବେଳେ ଜଣେ ନିଜ ଜୀବନକୁ ସତତ ବିପଦାପନ୍ନ କରି ଅନ୍ୟ ସମସ୍ତ ପ୍ରକାର ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ ହୁଏ, ତାହାର ଗଭୀର ପ୍ରୋତ୍ସାହନପୂର୍ଣ୍ଣ ପ୍ରେରଣାର ଆବଶ୍ୟକତା ପଡ଼ିଥାଏ । ପୂର୍ବବର୍ତ୍ତୀ କ୍ରାନ୍ତିକାରୀମାନଙ୍କ ପାଇଁ ଏହି ପ୍ରେରଣା ରହସ୍ୟବୋଧ ଓ ଧର୍ମ ଉପରେ ଅବଲମ୍ବିତ ଥିଲା । ସେମାନେ କ୍ରାନ୍ତିକାରୀ ଆଦର୍ଶ ପ୍ରତି ଅଗ୍ରଗତି କରିଥିବାରୁ ଶୋଷଣ ବିରୁଦ୍ଧରେ ସଂଗ୍ରାମ କରିବାବେଳେ ଆଧ୍ୟାତ୍ମିକତା ରୂପକ କୃତ୍ରିମ ଅବଲମ୍ବନର ଅପେକ୍ଷା ରଖିଲେ ନାହିଁ । ସେମାନେ 'ଶାଶ୍ୱତ' ମୁକ୍ତିର ସାନ୍ତ୍ୱନା ଓ ସନ୍ତୋଷର ଅପେକ୍ଷା ନ ରଖି ନିର୍ଭୀକ ଭାବରେ ଫାଶୀ ଚଢ଼ିବା ପାଇଁ ଅଗ୍ରସର ହୋଇ ଆସିଲେ । ସେମାନେ ଦଳିତମାନଙ୍କ ମୁକ୍ତି ପାଇଁ ସଂଗ୍ରାମ କରୁଥିଲେ, କାରଣ "ତାଙ୍କ ପାଇଁ ତାହା ବିନା ଗତ୍ୟନ୍ତର ନଥିଲା ।"

ଏହି ଲେଖା ଲେଖିଲାବେଳକୁ ଭଗତସିଂହ ନିଜ ବେକ ଚାରିପଟେ ଫାଶୀ ଦଉଡ଼ି ପଡ଼ିବା ପାଇଁ ଅପେକ୍ଷା କରୁଥିଲେ । ସେ ଜାଣିଥିଲେ ଯେ ଏପରି ମୁହୂର୍ତ୍ତରେ ଈଶ୍ୱରଙ୍କୁ ଆଶ୍ରୟ କରିଯିବା ସହଜ । "ଈଶ୍ୱରଙ୍କଠାରେ ମଣିଷ ଏକ ବଳିଷ୍ଠ ଆଶ୍ୱାସନା ଓ ଆଶ୍ରୟ ପାଇଥାଏ ।" କିନ୍ତୁ ପକ୍ଷାନ୍ତରରେ ନିଜର ଅନ୍ତର୍ନିହିତ ଶକ୍ତି ଉପରେ ନିର୍ଭର କରିବା ସେତେ ସହଜ ନୁହେଁ । ସେ ଲେଖିଛନ୍ତି, "ପବନ ତୋଫାନ ଓ ଝଞ୍ଜା ମଧ୍ୟରେ ନିଜ ଗୋଡ଼ରେ ଠିଆ ହେବା ପିଲାଖେଳ ନୁହେଁ ।" ସେ ମଧ୍ୟ ଜାଣିଥିଲେ ଯେ ଏହି କର୍ମ ପ୍ରଭୂତ ନୈତିକବୋଧର ପ୍ରୟୋଜନ ରଖେ ଏବଂ ଅଧୁନାତନ କ୍ରାନ୍ତିବାଦୀମାନେ ଏହି ବିଲକ୍ଷଣ

---

[୧] ଯଦିବା ଭଗତ ସିଂହ ଏହି ପ୍ରବନ୍ଧମାନଙ୍କରେ ସ୍ପଷ୍ଟ ଭାବରେ ଉଲ୍ଲେଖ କରି ନାହାନ୍ତି, ତଥାପି ଜାତୀୟବାଦୀମାନଙ୍କର ପ୍ରେରଣାର ଉତ୍ସ ରୂପେ ଗ୍ରହଣ କରାଯାଉଥିବା ଧର୍ମକୁ ସାଂପ୍ରଦାୟିକତାଠାରୁ ସେ ପୃଥକ୍ ଭାବରେ ଚିନ୍ତା କରିଛନ୍ତି । ପୂର୍ବବର୍ତ୍ତୀ କ୍ରାନ୍ତିକାରୀମାନେ ଧର୍ମକୁ ପ୍ରେରଣା ଓ ଆଦର୍ଶବୋଧ ଲାଗି ଗ୍ରହଣ କରିଥିଲେ । କିନ୍ତୁ ସେମାନେ ସାଂପ୍ରଦାୟିକବାଦୀ ନ ଥିଲେ । ସେମାନଙ୍କ ପାଇଁ ଧର୍ମ ଥିଲା ଅନ୍ତଃଶକ୍ତିର ଉତ୍ସ କିନ୍ତୁ ତାହା ସେମାନଙ୍କର ରାଜନୀତିର ଆଶ୍ରୟ ନ ଥିଲା । ଧର୍ମ ସେମାନଙ୍କୁ ସମଗ୍ର ଭାରତବାସୀଙ୍କ ଜାତୀୟ ମୁକ୍ତି ଲାଗି ସଂଗ୍ରାମ କରିବାକୁ ପ୍ରେରଣା ଯୋଗାଉଥିଲା, କିନ୍ତୁ ସାଂପ୍ରଦାୟିକ ରାଜନୀତିର ସଂଗଠକମାନଙ୍କୁ ଭାରତୀୟଙ୍କ ଗୋଟିଏ ବର୍ଗର ଲୋକଙ୍କୁ ଅନ୍ୟବର୍ଗର ଲୋକମାନଙ୍କ ପ୍ରତି ଘୃଣା ଭାବ ଜନ୍ମାଇବା ଲାଗି ପ୍ରଣୋଦିତ କରୁନଥିଲା । ଧର୍ମ ଓ ରହସ୍ୟବାଦକୁ ଅବଲମ୍ବନ କରି ଜାତୀୟତାବାଦୀମାନେ ସାମ୍ରାଜ୍ୟବାଦୀ ମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିବାକୁ ଅନୁପ୍ରେରିତ ହେଉଥିଲେ । କିନ୍ତୁ ସେ ସମୟରେ ସାମ୍ପ୍ରଦାୟିକବାଦୀମାନେ ବ୍ୟକ୍ତିଗତ ଭାବରେ ସାମ୍ରାଜ୍ୟବାଦକୁ ସମର୍ଥନ କରୁଥିଲେ ଏବଂ ବାସ୍ତବ ଭୂମିକାରେ ଅଖଣ୍ଡ ଭାରତକୁ ବିଭାଜନ କରାଇ ସାମ୍ରାଜ୍ୟବାଦୀଙ୍କ ବିରୁଦ୍ଧରେ ନୁହେଁ, ଅନ୍ୟବର୍ଗର ଭାରତୀୟମାନଙ୍କ ବିରୁଦ୍ଧରେ ସେମାନଙ୍କ ରାଜନୀତିର ଶାଣିତ ଧାରକୁ ପ୍ରୟୋଗ କଲେ । କିନ୍ତୁ ଯେଉଁମାନେ ତାଙ୍କ କାର୍ଯ୍ୟକ୍ରମର ଯଥାର୍ଥ ରୂପ ବିଷୟରେ ବୁଝିଥିଲେ, ସେମାନେ ଆଉ ସେହି ଧର୍ମ ଓ ରହସ୍ୟବାଦରେ ଅବଲମ୍ବିତ ହେଲେ ନାହିଁ ।

ନୈତିକ ପଥକୁ ଅନୁସରଣ କରୁଅଛନ୍ତି । ଏହି ପଥର ଯାତ୍ରୀ ନିଜକୁ ''ମାନବ ଜାତିର ସେବା ଏବଂ ଦୁଃଖ ପୀଡ଼ିତ ମାନବର ମୁକ୍ତି'' ଲାଗି ଉତ୍ସର୍ଗ କରିଥାନ୍ତି । ଏହି ପଥରେ ଯାତ୍ରା କରୁଥିବା ନରନାରୀମାନେ ସାହସର ସହିତ ସକଳ ''ଦମନକାରୀ, ଶୋଷକ ଓ ନିଷ୍ଠୁର ଉତ୍ପୀଡକ'' ମାନଙ୍କୁ ମୁକାବିଲା କରିବା ପାଇଁ ନିଜକୁ ନିୟୋଜିତ କରିଥିଲେ । ''ବୃଦ୍ଧ ମାନସିକତା''କୁ ତ୍ୟାଗ କରି ସେମାନେ ନିଜ ପାଇଁ ନିଜେ ଚିନ୍ତା କରୁଥିବାକୁ ଜୋର ଦେଉଥିଲେ । ଭଗତ ସିଂହ ଅଧିକନ୍ତୁ ଉଲ୍ଲେଖ କରିଛନ୍ତି, ''ସମାଲୋଚନା ଏବଂ ସ୍ୱାଧୀନ ଚିନ୍ତା ହେଉଛି କ୍ରାନ୍ତିକାରୀମାନଙ୍କ ପାଇଁ ଦୁଇଟି ଅପରିହାର୍ଯ୍ୟ ଗୁଣ ।''

ଭଗତ ସିଂହ ମଧ୍ୟ ଦର୍ଶାଇଛନ୍ତି ଯେ ଯୁକ୍ତି ପରକ ଜୀବନଯାପନ କରିବା ସହଜ କର୍ମ ନୁହେଁ । ଅନ୍ଧବିଶ୍ୱାସରୁ ସାନ୍ତ୍ୱନା ଏବଂ ଶାନ୍ତି ଲାଭ କରିବା ସହଜ । କିନ୍ତୁ ଅନବରତ ଯୁକ୍ତି ପରକ ଜୀବନଯାପନ କରିବାକୁ ଚେଷ୍ଟା କରିବା ଆମର କର୍ତ୍ତବ୍ୟ । ସେଥିପାଇଁ ଭଗତସିଂହ ପରିଶେଷରେ ଦୃଢ଼ତାର ସହିତ କହିଛନ୍ତି ଯେ, ନିଜକୁ ଜଣେ ନାସ୍ତିକ ଏବଂ ବାସ୍ତବବାଦୀ (ବସ୍ତୁତନ୍ତ୍ରବାଦୀ) ବୋଲି ଘୋଷଣା କରି ''ସେ ଚେଷ୍ଟା କରୁଥିଲେ ଉନ୍ନତ ଶିର ହୋଇ ଯେପରି ଶେଷ ପର୍ଯ୍ୟନ୍ତ; ଏପରିକି ଫାଶୀ ପଟାରେ ମଧ୍ୟ ସେ ଠିଆ ହୋଇପାରିବେ ।''

(୨)

ଧର୍ମର ଭୂମିକା ଓ ତାହାର ମୂଳୋଦ୍ଭବ ବିଷୟରେ ଭଗତସିଂହଙ୍କ ବିଶ୍ଳେଷଣରୁ ତାଙ୍କର ଶକ୍ତିଶାଳୀ ବୌଦ୍ଧିକ ଶକ୍ତି, କ୍ରାନ୍ତିକାରୀ ପ୍ରତିବଦ୍ଧତା ଏବଂ ଐତିହାସିକ ତଥା ଜଡ଼ବାଦୀ ଏବଂ ବୈଜ୍ଞାନିକ ପଦ୍ଧତିର ପରିଚୟ ମିଳେ ।

ସେ ଉଲ୍ଲେଖ କରିଛନ୍ତି ଯେ ସାଧାରଣ ଜନତାକୁ ପ୍ରତାରିତ କରିବା ପାଇଁ ଏବଂ ସମାଜରେ ନିଜ ଗୋଷ୍ଠୀର ଅଧିକାରକୁ ସାବ୍ୟସ୍ତ କରିବା ପାଇଁ ଏବଂ ଜନତାକୁ ସାମାଜିକ ସ୍ଥିତିରେ ଚୁପ୍ ହୋଇ ରହିବା ପାଇଁ ଶାସକ ଓ ଶୋଷକ ଗୋଷ୍ଠୀ ଧର୍ମକୁ କେବଳ ସୃଷ୍ଟି କରିଛନ୍ତି ବୋଲି କୁହାଯାଇଥାଏ । ଯଦିବା ବାସ୍ତବ ଜୀବନରେ ଧର୍ମ ଏହି ଉଦ୍ଦେଶ୍ୟ ସାଧନ କରିଥାଏ, ଏବଂ ଶାସକ ଓ ଶୋଷକ ଗୋଷ୍ଠୀର ସହାୟକ ତଥା ଆୟୁଧ ରୂପେ କାର୍ଯ୍ୟକରେ । କିନ୍ତୁ ଆଦିମ ମନୁଷ୍ୟ ନିଜ ପ୍ରାକୃତିକ ପରିବେଶକୁ ପୂର୍ଣ୍ଣ ଭାବରେ ବୁଝି ନ ପାରୁଥିବାରୁ ଏବଂ ସାମାଜିକ କାର୍ଯ୍ୟକଳାପ ତଥା ସାମାଜିକ ସଂସ୍ଥାର ସ୍ୱରୂପ ବୁଝିବାକୁ ଅସମର୍ଥ ହୋଇଥିବାରୁ ଏବଂ ନିଜ ଜୀବନକୁ ବୁଝି ତାହାର ପରିସୀମୀତତାକୁ ଅତିକ୍ରମ ନ କରିପାରୁଥିବାର ପରିଣତି ରୂପେ ଧର୍ମର ଉଦ୍ଭବ ହୋଇଅଛି । ସେହି କାରଣରୁ ''ଈଶ୍ୱର'' ଏକ ପ୍ରୟୋଜନୀୟ କଳ୍ପନା (ମିଥ୍) ହୋଇଯାଇଛି । ଏହି କଳ୍ପନା (ମିଥ୍) ''ଆଦିମ ଯୁଗରେ ସମାଜ ପାଇଁ ପ୍ରୟୋଜନୀୟ ହୋଇପଡ଼ିଥିଲା ।''

ଏହାବ୍ୟତୀତ ''ଈଶ୍ୱର-ପ୍ରତ୍ୟୟ ବିଷାଦ ପୀଡ଼ିତ ମନୁଷ୍ୟ ପାଇଁ ସହାୟକ

ହୋଇଥାଏ ।'' ଅସହାୟ ବ୍ୟକ୍ତି ନିଜ ଜୀବନକୁ ସାହସର ସହିତ ସମ୍ମୁଖୀନ ହେବା ପାଇଁ ଈଶ୍ୱର ଓ ଧର୍ମ ବଳ ଯୋଗାଇଥାଏ । ''କଠିନ ପରିସ୍ଥିତିକୁ ସାହସର ସହିତ ମୁକାବିଲା କରିବା, ସକଳ ବିପଦକୁ ପୌରୁଷର ସହିତ ସମ୍ମୁଖୀନ ହେବା ଏବଂ ସମୃଦ୍ଧି ଓ ପ୍ରାଚୁର୍ଯ୍ୟ ସମୟରେ ଉଚ୍ଛୃଙ୍ଖଳ ଭାବକୁ ଆୟତ୍ତ କରିବା ପାଇଁ ଈଶ୍ୱରଙ୍କୁ କାଳ୍ପନିକ ସ୍ଥିତି ପ୍ରଦାନ କରାଯାଇଥିଲା ।'' ''ଈଶ୍ୱର-ବିଶ୍ୱାସ କଷ୍ଟମୟ ଜୀବନକୁ କୋମଳ କରିଦିଏ, ଏପରିକି ତାହାକୁ ସୁଖକର କରିଦିଏ । ଈଶ୍ୱରଙ୍କଠାରେ ମନୁଷ୍ୟ ସୁଦୃଢ଼ ସାନ୍ତ୍ୱନା ଓ ଆଶ୍ରୟ ଲାଭ କରେ ।'' ତେଣୁ ବିଷାଦିତ, ପରିତ୍ୟକ୍ତ ଏବଂ ଅସହାୟ ବ୍ୟକ୍ତି ପାଇଁ ଈଶ୍ୱର ''ପିତା, ମାତା, ଭଉଣୀ, ଭାଇ, ବନ୍ଧୁ ଏବଂ ସହାୟକ'' ହୋଇ ରହନ୍ତି ।[?]

କିନ୍ତୁ, ଭଗତ ସିଂହ କହିଛନ୍ତି, ଯେତେବେଳେ ବିଜ୍ଞାନ ଅଗ୍ରଗତି କଲା, ଏବଂ ଯେତେବେଳେ ଦଳିତମାନେ ନିଜ ମୁକ୍ତି ଲାଗି ସଂଗ୍ରାମ ଆରମ୍ଭ କଲେ, ଏବଂ ଯେତେବେଳେ ''ମନୁଷ୍ୟ ନିଜ ଗୋଡ଼ରେ ଠିଆ ହୋଇ ବାସ୍ତବବାଦୀ ହେବାକୁ ଚେଷ୍ଟା କଲା, (ଭଗତ ସିଂହ 'ବାସ୍ତବବାଦୀ' ଶବ୍ଦକୁ 'ଯୁକ୍ତିବାଦୀ' ଓ 'ଭୌତିକବାଦୀ' ସ୍ଥାନରେ ପ୍ରୟୋଗ କରିଛନ୍ତି ।), ଈଶ୍ୱରଙ୍କ ପରି କୃତ୍ରିମ ଆଲମ୍ବନ, ଏବଂ କାଳ୍ପନିକ ତ୍ରାଣକର୍ତ୍ତାଙ୍କର ସମାପ୍ତି ଘଟିଲା । ଆତ୍ମ ମୁକ୍ତି ପାଇଁ ସଂଗ୍ରାମ ଚଳାଉଥିବାବେଳେ ''ଧର୍ମର ସଂକୀର୍ଣ୍ଣ ଧାରଣା'' ଏବଂ ଈଶ୍ୱର-ବିଶ୍ୱାସ ବିରୁଦ୍ଧରେ ସଂଗ୍ରାମ କରିବାକୁ ପ୍ରୟୋଜନ ପଡ଼େ ।'' ''ପ୍ରଗତି ପାଇଁ ଠିଆ ହୋଇଥିବା ଯେ କେହି ବ୍ୟକ୍ତି''ଙ୍କୁ ଭଗତ ସିଂହ କହିଛନ୍ତି, ''ପୁରୁଣା ବିଶ୍ୱାସର ପ୍ରତ୍ୟେକ ଅଂଶକୁ ସମାଲୋଚନା କରି, ଅବିଶ୍ୱାସ କରି ଆହ୍ୱାନ ଜଣାଇବାକୁ ପଡ଼ିଥାଏ ।'' ପ୍ରଚଳିତ ବିଶ୍ୱାସର ପ୍ରତ୍ୟେକ ଅଂଶର ଅନ୍ଧିକନ୍ଧିକୁ ଯୁକ୍ତି ଦ୍ୱାରା ପରୀକ୍ଷା କରିନେବାକୁ ପଡ଼ିଥାଏ । ଯେଉଁ ବ୍ୟକ୍ତି ନିଜକୁ ବାସ୍ତବବାଦୀ ବୋଲି ଘୋଷଣା କରିବେ, ତାଙ୍କୁ ସକଳ

[?] ତରୁଣ ଭଗତ ସିଂହ ମାର୍କ୍ସଙ୍କ ଚିନ୍ତାର କେତେ ନିକଟବର୍ତ୍ତୀ । ୧୮୪୪ ରେ ମାର୍କ୍ସ ଲେଖିଥିଲେ, ଧର୍ମ ହେଉଛି ଜଗତ ବିଷୟକ ସାଧାରଣ ମୀମାଂସା, ତାହାର ସାର ସଂଗ୍ରହର ବିଶ୍ୱକୋଷ, ଏକ ଲୋକପ୍ରିୟ ଢଙ୍ଗରେ ତାହାର ତର୍କଶାସ୍ତ୍ର, ତାହାର ଆତ୍ମିକ ଉର୍ଜ୍ଜନା, ତାହାର ଉତ୍ସାହ, ତାହାର ନୈତିକ ବିଧାନ, ତାହାର ମହିମ୍ନ ଅନୁପୂରକ, ଆଶ୍ୱାସନା ଓ ଯଥାର୍ଥ୍ୟ ପ୍ରତିପାଦନର ସାର୍ବିକ ସ୍ରୋତ ଅଟେ । ଧର୍ମୀୟ ଖେଦ ହେଉଛି ଯୁଗପତ୍ ଏକ ବାସ୍ତବ ଖେଦ ଏବଂ ବାସ୍ତବ ଖେଦ ବିରୁଦ୍ଧରେ ପ୍ରତିବାଦ ଜଣାଉଥିବା ଏକ ଅଭିବ୍ୟକ୍ତି ଏବଂ ଧର୍ମ ହେଉଛି ଦଳିତମାନଙ୍କର ଦୀର୍ଘଶ୍ୱାସ, ହୃଦୟହୀନ ଜଗତର ହୃଦୟ । ଉତ୍ସାହହୀନ ଅବସ୍ଥାରେ ଉତ୍ସାହ । ଏହା ଜନତା ପାଇଁ ଅଫିମ । ଜନତାର କାଳ୍ପନିକ ସୁଖ ସନ୍ତୋଷ ଭାବରେ ଅଭିବ୍ୟକ୍ତ ଧର୍ମର ନିରାକରଣ ହେଉଛି ସେମାନଙ୍କ ଯଥାର୍ଥ ସୁଖ ସନ୍ତୋଷ ଲାଗି ଦାବି ।'' କଲେକ୍ଟେଡ୍ ୱାର୍କ୍ସ, ତୃତୀୟ ଖଣ୍ଡ, ପୃଷ୍ଠା ୧୭୫-୧୭୬ । ଯଦିକା ଭଗତ୍ ସିଂହ ଏହି ପରିଚ୍ଛେଦକୁ ପଢ଼ିବା ସୁଯୋଗ ପାଇ ନଥିବେ, ତଥାପି ସେ ଅନ୍ୟମାନଙ୍କ ଠାରୁ ଅଧିକ ଭାବରେ ବୁଝିଥିଲେ ଯେ କେଉଁ ଅର୍ଥରେ ମାର୍କ୍ସ କହିଛନ୍ତି ''ଏହା ଜନତା ପାଇଁ ଅଫିମ ।''

ପ୍ରାଚୀନ ବିଶ୍ୱାସକୁ ରଣାହ୍ୱାନ ଦେବାକୁ ପଡ଼ିବ... ସମଗ୍ର ବିଶ୍ୱାସମାନଙ୍କୁ ଧୂଳିସାତ୍ କରି ନୂତନ ଦର୍ଶନ ନିର୍ମାଣ ଲାଗି ଭୂମି ପ୍ରସ୍ତୁତ କରିବାକୁ ହେବ ।''

(୩)

ପୂର୍ବସୂରୀମାନଙ୍କ ପ୍ରତି ଭଗତ ସିଂହ ସହାନୁଭୂତିଶୀଳ ଥିଲେ । ଅଥଚ ତାଙ୍କର ସମୀକ୍ଷାଣାତ୍ମକ ଅବବୋଧ ସହିତ, ଦାର୍ଶନିକ ଓ ରାଜନୈତିକ ପ୍ରତ୍ୟୟଗୁଡ଼ିକୁ ଐତିହାସିକ ପରିସ୍ଥିତିରେ ସ୍ଥାପନ କରିପାରିବାର ଦକ୍ଷତା, ଏବଂ ତାଙ୍କର ମୌଳିକ ମାର୍କ୍ସବାଦୀ ଯୁକ୍ତି-ପଦ୍ଧତିର ସ୍ୱତନ୍ତ୍ରତା, ସ୍ପଷ୍ଟ ଭାବରେ ଅନ୍ୟାନ୍ୟ ଆଲୋଚନାମାନଙ୍କରେ ପ୍ରକଟିତ ହୋଇଛି ।

ପୂର୍ବବର୍ତ୍ତୀ କ୍ରାନ୍ତିବାଦୀ ଲାଲା ରାମଶରଣ ଦାସଙ୍କ ରଚିତ କବିତା ଗ୍ରନ୍ଥ ''ଦି ଡ୍ରିମଲାଣ୍ଡ''ର ମୁଖବନ୍ଧ ହେଉଛି ଭଗତ ସିଂହଙ୍କର ଦ୍ୱିତୀୟ ପ୍ରବନ୍ଧ । ୧୯୧୫ ମସିହାରେ ଲାଲା ରାମଶରଣ ଦାସ ଦ୍ୱିପାନ୍ତର ଦଣ୍ଡରେ ଦଣ୍ଡିତ ହୋଇ ଦେଶାନ୍ତରୀ ହୋଇଥିଲେ । ତାଙ୍କ ରଚିତ ସେହି ଗ୍ରନ୍ଥର ମୁଖବନ୍ଧରେ ଭଗତ ସିଂହ ପରୋକ୍ଷ ଭାବରେ ସୂଚିତ କରିଛନ୍ତି କିପରି 'ଶୁଦ୍ଧ' ଜାତୀୟତାବାଦରୁ କ୍ରାନ୍ତିକାରୀମାନଙ୍କ ଚିନ୍ତାର ପରିବର୍ତ୍ତନ ଘଟିଛି । ବିଦେଶୀ ଶାସନକୁ କିପରି ସମୂଳେ ଉଚ୍ଛେଦ କରାଯିବ ଏହି ଗୋଟିଏ ମାତ୍ର ପ୍ରତ୍ୟୟରେ 'ଶୁଦ୍ଧ' ଜାତୀୟତାବାଦ ଆଧାରିତ ହୋଇଥିଲା । ତହିଁରୁ ପରିବର୍ତ୍ତିତ ହୋଇ ଆଉ ଏକ ଜାତୀୟତାବାଦର ଉଦ୍ଭବ ହେଲା, ଯହିଁରେ ପୂର୍ବ ଜାତୀୟଦାବାଦର ଆଦର୍ଶ ସହିତ ସମତାଳ ରଖି ପ୍ରଚଳିତ ସାମାଜିକ ବ୍ୟବସ୍ଥାର ପୁର୍ନନିର୍ମାଣ ଓ ପୁର୍ନବିନ୍ୟାସ କରାଯିବା ଲାଗି କ୍ରାନ୍ତିବାଦୀମାନେ ଦୃଢ଼ ପ୍ରତିବଦ୍ଧତା ପ୍ରକାଶ କଲେ । ଭଗତ ସିଂହ ପ୍ରଥମରୁ ଜଣେ କବି ଭାବରେ କିନ୍ତୁ ରାଜନୈତିକ-ଦାର୍ଶନିକ ଭାବରେ ନୁହନ୍ତି, ପୂର୍ବ ପିଢ଼ି ସହିତ ନିଜ ପିଢ଼ିର ଅବିଚ୍ଛିନ୍ନତାକୁ ପ୍ରତିଷ୍ଠା କରିଅଛନ୍ତି । ପୂର୍ବ ପିଢ଼ି କ୍ରାନ୍ତିବାଦୀମାନଙ୍କଠାରୁ ଜାତୀୟବାଦ, ଦେଶବାସୀମାନଙ୍କ ପ୍ରତି ପ୍ରୀତି ଏବଂ ସେଥିଲାଗି ତ୍ୟାଗ ସ୍ୱୀକାର କରିପାରିବା ଶକ୍ତିକୁ ପରବର୍ତ୍ତୀ ପିଢ଼ି ଆହରଣ କରିଥିବା ସେ ଦର୍ଶାଇଛନ୍ତି । ତା'ପରେ ସେ ସେମାନଙ୍କଠାରୁ ନିଜର ଦାର୍ଶନିକ, ରାଜନୈତିକ ଏବଂ ଆଦର୍ଶଗତ ପାର୍ଥକ୍ୟ ଉପସ୍ଥାପନ କରିଅଛନ୍ତି ।

ଯାହା ଏହି ପ୍ରସ୍ତୁତ ମୁଖବନ୍ଧରେ ପୂର୍ବରୁ ଆଲୋଚିତ ହୋଇସାରିଛି ଯେ, ଭଗତ ସିଂହ ତାଙ୍କ ପ୍ରବନ୍ଧରେ ରହସ୍ୟବାଦ ଓ ଧର୍ମୀୟଭାବନାରେ ଉତ୍ସାହ ଓ ପ୍ରେରଣା ପାଇଁ ନିର୍ଭରଶୀଳ ପୂର୍ବବର୍ତ୍ତୀ କ୍ରାନ୍ତିବାଦୀମାନଙ୍କଠାରୁ ନିଜ ମତବାଦର ପାର୍ଥକ୍ୟ ଦର୍ଶାଇ ଭୌତିକବାଦ (ଜଡ଼ବାଦ), ଯୁକ୍ତି-ପରକତା ଏବଂ ବିଜ୍ଞାନ ପ୍ରତି ନିଜର ଦୃଢ଼ ଅଙ୍ଗୀକାରବଦ୍ଧତା ପ୍ରକାଶ କରିଛନ୍ତି ।

ହିଂସା ଓ ଅହିଂସା ଭଳି ସମକାଳୀନ, ଜଟିଳ ଏବଂ ଉଦ୍‌ବେଗକର ପ୍ରଶ୍ନ ବିଷୟରେ ସେ ବିଚାର ଉପସ୍ଥାପନ କରିଛନ୍ତି । ବିଷୟଟିର ଗଭୀରତାକୁ ଯାଇ ସେ ବର୍ଣ୍ଣନା କରିଛନ୍ତି ଯେ, କିପରି କ୍ରାନ୍ତିବାଦୀମାନେ ଏକ ନୂତନ ସମାଜ-ସଂସ୍ଥା ଗଢ଼ିବାକୁ ଚାହୁଁଛନ୍ତି, ଯହିଁରେ

ସକଳ ପ୍ରକାର ହିଂସା ସଂମ୍ପୂର୍ଣ୍ଣ ଭାବରେ ନିରାକୃତ ହେବ ଏବଂ ଯହିଁରେ ଯୁକ୍ତି ଓ ନ୍ୟାୟ ପ୍ରଭାବ ବିସ୍ତାର କରିବ ଓ ସମସ୍ତ ପ୍ରଶ୍ନର ସମାଧାନ ଯୁକ୍ତି ପ୍ରୟୋଗ ଓ ଶିକ୍ଷାଦାନ ମାଧ୍ୟମରେ ସମ୍ଭବ ହେବ । କିନ୍ତୁ ଏହାକୁ ହିଁ ସାମ୍ରାଜ୍ୟବାଦୀମାନେ, ପୁଞ୍ଜିବାଦୀମାନେ ଏବଂ ଅନ୍ୟ ଶୋଷକ ଗୋଷ୍ଠୀମାନେ ଘଟିବାକୁ ସୁଯୋଗ ଦେବେ ନାହିଁ । ଶାନ୍ତିପୂର୍ଣ୍ଣ ପଦ୍ଧତିରେ ଜନସାଧାରଣଙ୍କୁ ଶିକ୍ଷାଦାନ କରି ତା' ମାଧ୍ୟମରେ ସମାଜବାଦର ବିକାଶ ପାଇଁ କରାଯାଉଥିବା ପ୍ରଚେଷ୍ଟାକୁ ସେମାନେ ନିର୍ଦ୍ଦୟ ଭାବରେ ଦମନ କରିବେ । ତେଣୁ କ୍ରାନ୍ତିକାରୀମାନଙ୍କୁ "ନିଜ କାର୍ଯ୍ୟକ୍ରମର ଅନିବାର୍ଯ୍ୟ ଏକ ଅଂଶ" ଭାବରେ ହିଂସାକୁ ଗ୍ରହଣ କରିବାକୁ ପଡ଼ିଥାଏ । ସମସ୍ତ ପ୍ରଶ୍ନକୁ ଚମତ୍କାର ଭାବରେ ସଂକ୍ଷେପରେ ଉପସଂହାର କରି ଭଗତ ସିଂହ କହିଛନ୍ତି, କ୍ରାନ୍ତିବାଦୀମାନେ "ହିଂସାକୁ ଏକ ଅନିବାର୍ଯ୍ୟ ଭୟାବହ ଆବଶ୍ୟକତା" ରୂପେ ଗ୍ରହଣ କରିଥାନ୍ତି । ଥରେ ସମାଜବାଦୀ ଶକ୍ତିର ପ୍ରତିଷ୍ଠା ହୋଇଗଲେ ଶିକ୍ଷା-ପଦ୍ଧତି ଓ ପ୍ରୋତ୍ସାହନ ପ୍ରଦାନକୁ ପ୍ରୟୋଗ କରି ସମାଜର ଉନ୍ନୟନ କରାଯାଇ ପାରିବ; କେବଳ ପ୍ରତିବନ୍ଧକତାକୁ ଦୂର କରିବା ପାଇଁ ବଳ ପ୍ରୟୋଗର ଆବଶ୍ୟକତା ରହିବ ।

ନାସ୍ତିକବାଦୀ ବିଷୟକ ପ୍ରବନ୍ଧରେ ସେହି ସମସ୍ୟାକୁ ସେ ସେହିଭଳି ଉପସ୍ଥାପନ କରିଛନ୍ତି । ନୂତନ ପିଢ଼ିର କ୍ରାନ୍ତିବାଦୀମାନେ ନିଛକ ହିଂସାତ୍ମକ ପଦ୍ଧତିରେ ନିହିତ ରୋମାଞ୍ଚକର ଭାବରୁ ନିଜ ମାନସିକତାକୁ ବଦଳାଇ ଦେଇଛନ୍ତି; ଯାହା ସେମାନଙ୍କ ପୂର୍ବସୂରୀମାନଙ୍କଠାରେ ବିଶେଷ ଭାବରେ ଦେଖିବାକୁ ମିଳୁଥିଲା । ନୂତନ ପିଢ଼ି ବିଶ୍ୱାସ କରିବାକୁ ଲାଗିଲେ, "ଅନିବାର୍ଯ୍ୟ ଆବଶ୍ୟକତାରୁ ହିଁ ଭୟାନକ ବଳ ପ୍ରୟୋଗ ପଦ୍ଧତିକୁ ପ୍ରୟୋଗ କରାଯାଇପାରିବ", ଏବଂ ସକଳ ପ୍ରକାର ଜନ ଆନ୍ଦୋଳନ ପାଇଁ ଅହିଂସାକୁ ହିଁ ନୀତିଗତ ଭାବରେ ଗ୍ରହଣ କରିବାକୁ ହେବ । ଅତଏବ ନୂତନ ପିଢ଼ିର କ୍ରାନ୍ତିବାଦୀମାନେ ହିଂସାର ଜୟଗାନ କରୁନାହାନ୍ତି; କିମ୍ବା କ୍ରାନ୍ତି କାର୍ଯ୍ୟକ୍ରମ ହିଂସାବାଦୀ ମତ ଉପରେ ଆଧାରିତ ବୋଲି ଭାବୁନାହାନ୍ତି । ଯେତେବେଳେ ଇତିହାସ ଓ ଶାସକଗୋଷ୍ଠୀ ସେମାନଙ୍କ ଉପରେ ଦାୟ ଲଦି ଦିଅନ୍ତି, ସେମାନେ ପ୍ରଚଳିତ ସମାଜ ବ୍ୟବସ୍ଥାକୁ ଉଚ୍ଛେଦ କରିବା ପାଇଁ "ଭୟାନକ ଆବଶ୍ୟକତା" କୁ ଗ୍ରହଣ କରିଥାନ୍ତି ।

## (୪)

ଏହା ସହିତ ଭଗତ ସିଂହ ଉପଲବ୍ଧି କରିଥିଲେ ଯେ ପୂର୍ବବର୍ତ୍ତୀ କ୍ରାନ୍ତିବାଦୀ ମାନଙ୍କ ଚିନ୍ତାରେ ୟୁଟୋପିଆନ୍ (କାଳ୍ପନିକତା) ଭାବ ଅନେକାଂଶରେ ବଳବତ୍ତର ରହିଥିଲା; ଏବଂ ତାହା ସାମାଜିକ ଆନ୍ଦୋଳନ ଓ ଉନ୍ନୟନର କେତେକ ସ୍ତରରେ ସକାରାତ୍ମକ ଭୂମିକା ନିର୍ବାହ କରିଥିଲା । ଯେତେବେଳେ କ୍ରାନ୍ତିକାରୀ ଆନ୍ଦୋଳନ ବୈଜ୍ଞାନିକ ଦୃଷ୍ଟିକୋଣକୁ ଗ୍ରହଣ କରିବାକୁ ଆରମ୍ଭ କଲା ଓ "ବୈଜ୍ଞାନିକ ମାର୍କ୍ସବାଦୀ ସମାଜବାଦ" ଦର୍ଶନକୁ ନିଜର କରିନେଲା, ଅନିବାର୍ଯ୍ୟ ଭାବରେ ୟୁଟୋପିଆନ ଚିନ୍ତା ଅବନମିତ ହେବାକୁ ଲାଗିଲା ।

ଭଗତ ସିଂହ ୟୁଟୋପିଆନ ଚିନ୍ତାର ଏକ ଦିଗକୁ ବିସ୍ତାରିତ ଭାବରେ ବ୍ୟାଖ୍ୟା କରିଛନ୍ତି : କିପରି ମାନସିକ ଓ ଶାରୀରୀକ ଶ୍ରମକୁ ସଂଯୋଜିତ କରିବାକୁ ହେବ ? ସେ ସ୍ୱୀକୃତି ଦେଇଛନ୍ତି ଯେ ସମାଜବାଦୀ ସମାଜ ଗଠନ ପାଇଁ ସେହି ଦୁଇ ମୌଳିକ ତତ୍ତ୍ୱ ମଧ୍ୟରେ ଥିବା ବ୍ୟବଧାନକୁ ଦୂର କରିବାକୁ ପଡ଼ିବ । କିନ୍ତୁ ଏହି ଦୂରୀକରଣକୁ ଯାନ୍ତ୍ରିକ ଏବଂ ୟୁଟୋପିଆନ ଢଙ୍ଗରେ କରାଯାଇପାରିବ ନାହିଁ । ରାମଶରଣ ଦାସ କହିଥିଲେ, ମାନସିକ ଶ୍ରମ କରୁଥିବା ପ୍ରତ୍ୟେକ ବ୍ୟକ୍ତିଙ୍କୁ ଦୈନିକ ଚାରିଘଣ୍ଟା ଶାରୀରିକ ଶ୍ରମ କରିବାକୁ ହେବ । ମାନସିକ ଶ୍ରମ ଓ ଶାରୀରିକ ଶ୍ରମର ପ୍ରକୃତି ଭିନ୍ନ ଭିନ୍ନ ଅଟେ । ଏହି ସମସ୍ୟାର ମୂଳ ହେଉଛି ଏହି ଦୁଇଟି ଶ୍ରମ ମଧ୍ୟରେ ରହିଥିବା ବର୍ତ୍ତମାନର ଅସମାନତା । ତାହାର ସମାଧାନ ହେଉଛି, ଦୁଇଟି ଶ୍ରମକୁ ଦୁଇଟି ଉତ୍ପାଦନକାରୀ ଶ୍ରମ ଭାବରେ ଗ୍ରହଣ କରି ଶାରୀରିକ ଶ୍ରମ କରୁଥିବା ବ୍ୟକ୍ତିମାନଙ୍କଠାରୁ ମାନସିକ ଶ୍ରମ କରୁଥିବା ବ୍ୟକ୍ତିଙ୍କ ଶ୍ରେଷ୍ଠତା ବିଷୟକ ଚିନ୍ତାର ବିରୋଧ କରିବା ।

(୫)

ପରିଶେଷରେ, ଭଗତ ସିଂହ ଥିଲେ ମାର୍କ୍ସ, ଏଙ୍ଗେଲସ୍, ଏବଂ ଲେନିନ୍‌ଙ୍କ ମହନୀୟ ପରମ୍ପରାର ଜଣେ ସମୀକ୍ଷଣାକାରୀ କ୍ରାନ୍ତିବାଦୀ । ଯୁବକମାନଙ୍କୁ ''ଦି ଡ୍ରିମ୍‌ଲାଣ୍ଡ'' ଅଧ୍ୟୟନ କରିବାକୁ ଉପଦେଶ ଦେଇ ସେ ସାବଧାନ କରାଇ ଦେଇଛନ୍ତି ଯେ, ''ସେହି ଗ୍ରନ୍ଥକୁ ଅନ୍ଧଭାବରେ ଅନୁସରଣ କରିବା ପାଇଁ ପଢ଼ନ୍ତୁ ନାହିଁ, ଏବଂ ଯାହା ଲେଖା ହୋଇଛି, ତାହାକୁ ଅବିଚାରିତ ଭାବରେ ଗ୍ରହଣ କରନ୍ତୁ ନାହିଁ । ତାହାକୁ ପଢ଼ନ୍ତୁ, ସମାଲୋଚନା କରନ୍ତୁ, ଚିନ୍ତା କରନ୍ତୁ ଏବଂ ତାହା ସାହାଯ୍ୟରେ ନିଜ ଭାବନାକୁ ସଂଗଠିତ କରିବା ପାଇଁ ଚେଷ୍ଟା କରନ୍ତୁ ।

**ବିପିନ ଚନ୍ଦ୍ର**

# କାହିଁକି ମୁଁ ଜଣେ ନାସ୍ତିକ

ଏକ ନୂତନ ପ୍ରଶ୍ନ ଅଙ୍କୁରିତ ହୋଇଛି । ଏହା କ'ଣ ମୋର ଔଦ୍ଧତ୍ୟ, ଯାହାଲାଗି ମୁଁ ସର୍ବଶକ୍ତିମାନ, ସର୍ବତ୍ର ବିରାଜିତ ଏବଂ ସର୍ବଜ୍ଞତା ଈଶ୍ୱରଙ୍କ ଅସ୍ତିତ୍ୱରେ ବିଶ୍ୱାସ କରେ ନାହିଁ ? ମୁଁ କେବେ କଳ୍ପନା କରି ନଥିଲି ଯେ ମୁଁ ଏଭଳି ଏକ ପ୍ରଶ୍ନର ସମ୍ମୁଖୀନ ହେବି । କିନ୍ତୁ କେତେକ ବନ୍ଧୁଙ୍କ ସହିତ ଆଳାପରେ ମୋତେ ସୂଚନା ମିଳିଥିଲା ଯେ ମୋର କେତେକ ବନ୍ଧୁ-ଯେଉଁମାନଙ୍କୁ ସେପରି ଭାବିବାରେ ମୁଁ ହୁଏତ ଅତ୍ୟଧିକ ଦାବୀ କରୁନାହିଁ, ସେମାନଙ୍କର ମୋ ସହିତ ସ୍ୱଳ୍ପ ସମ୍ପର୍କରୁ ଜଣାପଡ଼ିଲା ଯେ, ମୋ ପକ୍ଷରେ ଈଶ୍ୱରଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରିବା ସ୍ପର୍ଦ୍ଧାର ବିଷୟ ଅଟେ ଏବଂ ଏହି ଅବିଶ୍ୱାସରେ ମୋର କେତେମାତ୍ରାରେ ଔଦ୍ଧତ୍ୟ ରହିଛି ! ଆଚ୍ଛା, ଏହି ସମସ୍ୟା ହେଉଛି ଏକ ଗମ୍ଭୀର ସମସ୍ୟା । ମାନବୀୟ ଗୁଣମାନଙ୍କର ଊର୍ଦ୍ଧ୍ୱକୁ ମୁଁ ଯାଇଛି ବୋଲି ଗର୍ବ କରୁନାହିଁ-ମୁଁ ଜଣେ ମଣିଷ ଓ ତାହାଠାରୁ ଅଧିକ କିଛି ନୁହେଁ, କେହି ଆଉ ଅଧିକ କିଛି ବୋଲି ଦାବୀ କିରିପାରିବେ ନାହିଁ । ମୋର ମଧ୍ୟ ଏହି ଦୁର୍ବଳତା ରହିଛି । ଔଦ୍ଧତ୍ୟ ମୋ ପ୍ରକୃତିର ଏକ ଅଂଗ ହୋଇ ରହିଛି । ମୋର ବନ୍ଧୁମାନେ ମୋତେ ଜଣେ ଏକଛତ୍ରବାଦୀ ବୋଲି କହନ୍ତି । ଏପରିକି ମୋର ବନ୍ଧୁ ମିଷ୍ଟର ବି.କେ. ଦତ୍ତ ମୋତେ ସେହିଭଳି କହନ୍ତି । କେତେକ ଘଟଣାରେ ମୋତେ ଏକଜିଦିଆ ବୋଲି ନିନ୍ଦା କରାଯାଇଛି । ମୋର କେତେକ ବନ୍ଧୁ ମଧ୍ୟ ବହୁ ଗୁରୁତର ଭାବରେ ଅଭିଯୋଗ କରିଛନ୍ତି ଯେ ମୁଁ ଅନିଚ୍ଛା ସତ୍ତ୍ୱେ ମୋର ମତକୁ ଅନ୍ୟମାନଙ୍କ ଉପରେ ଲଦିଦିଏ ଏବଂ ମୋର ପ୍ରସ୍ତାବକୁ ଗ୍ରହଣ କରାଇନିଏ । ଏକଥା କେତେକ ମାତ୍ରାରେ ସତ୍ୟ । ମୁଁ ଏହା ଅସ୍ୱୀକାର କରୁ ନାହିଁ । ଏହା ଅହଂକାର ହୋଇପାରେ । ଆମର ମତ ଅନ୍ୟଲୋକଙ୍କ ପ୍ରଚଳିତ ମତ ସହିତ ବିରୋଧ ହେବା ବିଷୟରେ ମୋର ଅବଶ୍ୟ ଔଦ୍ଧତ୍ୟ ରହିଛି, କିନ୍ତୁ ତାହା ବ୍ୟକ୍ତିଗତ ନୁହେଁ, ଏହା ହୋଇପାରେ ଯେ ଏହା ହେଉଛି ଆମ ସ୍ୱୀକୃତ ମତ ପ୍ରତି ସମୁଚିତ ଗର୍ବ ଏବଂ ଏହାକୁ ଔଦ୍ଧତ୍ୟ କୁହାଯାଇ ନପାରେ । ଔଦ୍ଧତ୍ୟ, ଠିକ୍ ଭାବରେ କହିଲେ 'ଅହଂକାର' ହେଉଛି ନିଜ ବ୍ୟକ୍ତିତ୍ୱରେ ଅନୁଚିତ ଗର୍ବ । ଏହା କ'ଣ ଏହି ଅନୁଚିତ ଗର୍ବ ଯାହା ମୋତେ ନାସ୍ତିକବାଦକୁ ଘେନିଯାଇଛି, କିମ୍ବା ଏହା ବିଚାର ଏବଂ ଯତ୍ନର ସହିତ ଅଧ୍ୟୟନ ଫଳରେ ମୁଁ ଈଶ୍ୱରଙ୍କ ସତ୍ତାରେ ଅବିଶ୍ୱାସ କରୁଛି ? ଏହି ପ୍ରଶ୍ନ ମୁଁ ଏଠାରେ

ଆଲୋଚନା କରିବାକୁ ଚାହେଁ । ମୁଁ ପ୍ରଥମରୁ ସ୍ପଷ୍ଟ କରିବାକୁ ଚାହେଁ ଯେ ଅହଂକାର ଏବଂ ଔଦ୍ଧତ୍ୟ ହେଉଛି ଦୁଇଟି ସ୍ୱତନ୍ତ୍ର ବିଷୟ ।

ସର୍ବପ୍ରଥମେ ମୁଁ ସମ୍ପୂର୍ଣ୍ଣ ଭାବରେ ଅବଧାରଣା କରିପାରୁ ନାହିଁ ଯେ ଜଣକର ଔଦ୍ଧତ୍ୟ ଓ ଆତ୍ମବଡ଼ିମା କିପରି ଈଶ୍ୱରଙ୍କ ବିଷୟରେ ବିଶ୍ୱାସର ପଥରୋଧ କରିପାରେ ! ଜଣେ ମହାନ ଲୋକର ମହାନତାକୁ ଅସ୍ୱୀକାର ମୁଁ କରିବି ଯଦି ମୁଁ ଯୋଗ୍ୟ ନହୋଇ କେତେକାଂଶରେ ଜନପ୍ରିୟତା ହାସଲ କରିଥିବି କିମ୍ବା ଯଥାଯୋଗ୍ୟ ଅପରିହାର୍ଯ୍ୟଗୁଣ ମୋ'ଠାରେ ନଥିବ । ଏହା ବୁଝାଯାଇପାରେ, କିନ୍ତୁ ଈଶ୍ୱରଙ୍କଠାରେ ବିଶ୍ୱାସ କରୁଥିବା ଜଣେ ବ୍ୟକ୍ତି ନିଜର ବ୍ୟକ୍ତିଗତ ଔଦ୍ଧତ୍ୟ ହେତୁ କିପରି ଈଶ୍ୱରଙ୍କୁ ବା ଅବିଶ୍ୱାସ କରିପାରେ ? ସେଥିରେ କେବଳ ଦୁଇଟି ମାର୍ଗ ଅଛି । ଯଦି ସେ ବ୍ୟକ୍ତି ନିଜକୁ ଈଶ୍ୱରଙ୍କର ପ୍ରତିସ୍ପର୍ଦ୍ଧୀ ବୋଲି ମନେକରେ କିମ୍ବା ସେ ଭାବିବାକୁ ଲାଗେ ଯେ ସେ ହେଉଛି ସ୍ୱୟଂ ଈଶ୍ୱର । ଏ ଦୁଇ ମାର୍ଗରୁ କୌଣସି ଗୋଟିଏ ମାର୍ଗରେ ସେ ଯଥାର୍ଥ ନାସ୍ତିକ ହୋଇପାରିବ ନାହିଁ । ପ୍ରଥମଟିରେ ଏପରିକି ସେ ତାହାର ପ୍ରତିସ୍ପର୍ଦ୍ଧୀର ଅସ୍ତିତ୍ୱ ଅସ୍ୱୀକାର କରୁନାହିଁ । ଦ୍ୱିତୀୟଟିରେ ମଧ୍ୟ ସେ ଜଣେ ପ୍ରକୃତିର ପୃଷ୍ଠଭୂମିରେ ରହି ତାହାକୁ ସଞ୍ଚାଳିତ କରୁଥିବା ଏକ ଚେତନ ସତ୍ତାକୁ ସ୍ୱୀକାର କରୁଅଛି । ଆମ ପାଇଁ ଏହି କଥାର ପ୍ରାଧାନ୍ୟ କିଛି ନାହିଁ ଯେ ସେ ନିଜକୁ ସେହି ପରମ ସତ୍ତା ବୋଲି ଭାବୁଛି କିମ୍ବା ସେହି ପରମ ସଚେତନ ସତ୍ତାକୁ ନିଜଠାରୁ ପୃଥକ ବୋଲି ଭାବୁଛି । ମୂଳ କଥା ସେମିତି ରହିଛି । ତାହାର ବିଶ୍ୱାସ ସେହିପରି ରହିଛି । ସେ କୌଣସି ପ୍ରକାରେ ନାସ୍ତିକ ନୁହେଁ । ଆଚ୍ଛା, ମୁଁ ଏତିକି କହୁଛି । ମୁଁ ପ୍ରଥମ ପର୍ଯ୍ୟାୟଭୁକ୍ତ ନୁହେଁ କିମ୍ବା ଦ୍ୱିତୀୟ ପର୍ଯ୍ୟାୟଭୁକ୍ତ ନୁହେଁ । ମୁଁ ସେହି ସର୍ବଶକ୍ତିମାନ ପରମସତ୍ତାଙ୍କର ଅସ୍ତିତ୍ୱକୁ ଅସ୍ୱୀକାର କରୁଛି । ମୁଁ କାହିଁକି ତାହାଙ୍କୁ ଅସ୍ୱୀକାର କରୁଛି ତାହା ମୁଁ ପରେ କହିବି । ଏଠାରେ ମୁଁ ଗୋଟିଏ କଥା ସ୍ପଷ୍ଟ କରିଦେବାକୁ ଚାହେଁ ଯେ ମୋର ଔଦ୍ଧତ୍ୟ ମୋତେ ନାସ୍ତିକବାଦୀ ତତ୍ତ୍ୱକୁ ଗ୍ରହଣ କରିବାକୁ ଅନୁପ୍ରେରିତ କରିନାହିଁ । ମୁଁ ପରମ ସତ୍ତାଙ୍କର ପ୍ରତିସ୍ପର୍ଦ୍ଧୀ ନୁହେଁ କିମ୍ବା ତାଙ୍କର ଅବତାର ନୁହେଁ । ଗୋଟିଏ କଥା ସିଦ୍ଧାନ୍ତ ହୋଇଯାଇଛି ଯେ ମୋର ଔଦ୍ଧତ୍ୟ ଏହି ପ୍ରକାର ଚିନ୍ତାଧାରା ପାଇଁ ମୋତେ ପରିଚାଳିତ କରିନାହିଁ । ଏହି ବନ୍ଧୁମାନଙ୍କ ଦ୍ୱାରା ମୋ ବିରୁଦ୍ଧରେ ହୋଇଥିବା ଅଭିଯୋଗକୁ ମୁଁ ପରୀକ୍ଷା କରି ଅପ୍ରମାଣିତ କରିବାକୁ ଚାହେଁ । ଏହି ବନ୍ଧୁମାନଙ୍କ ମତରେ ସମ୍ଭବତଃ ଦିଲ୍ଲୀ ବୋମା ଓ ଲାହୋର ଚକ୍ରାନ୍ତ ମୋକଦ୍ଦମାର ବିଚାରବେଳେ ମୁଁ ଯେଉଁ ଅଯଥା ଲୋକପ୍ରିୟତା ପାଇଲି ତାହା ମୋତେ ଆତ୍ମବଡ଼ିମାଯୁକ୍ତ କରିଦେଲା । ଆଚ୍ଛା, ଚାଲନ୍ତୁ ଦେଖିବା ସେମାନଙ୍କର ଧାରଣାମାନ ସତ୍ୟ କି ? ମୋର ନାସ୍ତିକବାଦ ଏବେକାଳର ସୃଷ୍ଟି ନୁହେଁ । ମୁଁ ଯେତେବେଳେ ଗୋଟିଏ ଅଜ୍ଞାତ ଯୁବକ ଥିଲି ସେତେବେଳେ ମୁଁ ଈଶ୍ୱରଙ୍କୁ ବିଶ୍ୱାସ କରିବାରୁ ନିବୃତ୍ତ ହୋଇ ଯାଇଥିଲି । ମୋ ପୂର୍ବ ଉଲ୍ଲିଖିତ ବନ୍ଧୁମାନେ, ମୋର ସେହି ସତ୍ତା ବିଷୟରେ ଆଦୌ ସଚେତନ ନଥିଲେ । ଅନ୍ତତଃ ଜଣେ କଲେଜ ଛାତ୍ରର ନିଜ ପୋଷିତ ଅଯଥା ଗର୍ବ ହେତୁ ନାସ୍ତିକବାଦକୁ

ଅନୁପ୍ରେରିତ ହୋଇ ଆସିଅଛି । ଯଦି ବା କେତେକ ଅଧ୍ୟାପକଙ୍କର ପ୍ରିୟଭାଜନ ହୋଇଥିଲାବେଳେ ଆଉ କେତେକଙ୍କର ଅପ୍ରିୟଭାଜନ ହୋଇଥିଲି । ମୁଁ ଏକ ପରିଶ୍ରମୀ ଓ ଅଧ୍ୟବସାୟୀ ଛାତ୍ର ନଥିଲି । ମୁଁ ଏହିଭଳି କୌଣସି ଗର୍ବ, ଉଦ୍ଧତ ଭାବ ପୋଷଣ କରିବାକୁ ସୁଯୋଗ ପାଇନଥିଲି । ବରଂ ମୁଁ ଗୋଟିଏ ଲାଜକୁଳା ପିଲା ଥିଲି ଏବଂ ମୋର ଭବିଷ୍ୟତ ଜୀବନଚର୍ଯ୍ୟା (କ୍ୟାରିୟର) ପ୍ରତି ନୈରାଶ୍ୟମୂଳକ ଭାବ ରହିଥିଲା । ସେତେବେଳେ ମୁଁ ସମ୍ପୂର୍ଣ୍ଣ ନାସ୍ତିକ ହୋଇ ନଥିଲି । ମୋର ପିତାମହ ଯାହାଙ୍କ ପ୍ରଭାବରେ ମୁଁ ପିଲାଦିନେ ବଢ଼ିଥିଲି, ସେ ଜଣେ ରକ୍ଷଣଶୀଳ ଆର୍ଯ୍ୟ ସମାଜବାଦୀ ଥିଲେ । ଜଣେ ଆର୍ଯ୍ୟ ସମାଜବାଦୀ ଯାହା ହେଲେ ହେଁ ସେ ନାସ୍ତିକ ହୋଇ ନପାରନ୍ତି । ମୋର ପ୍ରାଥମିକ ଶିକ୍ଷା ସମାପ୍ତପରେ ମୁଁ ଲାହୋର ଡି.ଏ.ଭି. ବିଦ୍ୟାଳୟରେ ଯୋଗ ଦେଲି ଏବଂ ପୂରା ଏକବର୍ଷ ପର୍ଯ୍ୟନ୍ତ ସେ ଛାତ୍ରାବାସରେ ରହିଲି । ସେଠାରେ ସକାଳ ଓ ସନ୍ଧ୍ୟାକାଳୀନ ପ୍ରାର୍ଥନା ବ୍ୟତୀତ ମୁଁ ଗାୟତ୍ରୀ ମନ୍ତ୍ର ଘଣ୍ଟାଘଣ୍ଟା ଧରି ଜପ କରୁଥିଲି । ସେ ସମୟରେ ମୁଁ ଏକ ସମ୍ପୂର୍ଣ୍ଣ ଈଶ୍ୱର ଭକ୍ତ ଥିଲି । ତା'ପରେ ମୁଁ ପିତାଙ୍କ ସହିତ ରହିଲି । ସେ ଜଣେ ରକ୍ଷଣଶୀଳ, ଧର୍ମଭାବନା ବିଷୟରେ ସହନଶୀଳ ବ୍ୟକ୍ତି ଥିଲେ । ତାଙ୍କରି ଶିକ୍ଷାବଳରେ ମୋ ଜୀବନକୁ ସ୍ୱାଧୀନତା ପାଇଁ ବିନିଯୋଗ କରିବା ଲାଗି ମୁଁ ଅଭୀପ୍ସା ପୋଷଣ କଲି । କିନ୍ତୁ ସେ ଜଣେ ନାସ୍ତିକ ନଥିଲେ । ତାଙ୍କର ଦୃଢ଼ ଈଶ୍ୱର ବିଶ୍ୱାସ ଥିଲା । ସେ ମୋତେ ପ୍ରତିଦିନ ପ୍ରାର୍ଥନା କରିବା ପାଇଁ ଉତ୍ସାହିତ କରୁଥିଲେ । ଏହିପରି ଭାବରେ ମୁଁ ଲାଳିତ ପାଳିତ ହୋଇ ଆସିଲି । ଅସହଯୋଗ ଆନ୍ଦୋଳନ ସମୟରେ ମୁଁ ଜାତୀୟ ମହାବିଦ୍ୟାଳୟ (ନ୍ୟାସନାଲ କଲେଜ) ରେ ଯୋଗ ଦେଲି । ସେହିଠାରେ ମୁଁ ସ୍ୱାଧୀନଚେତା ଭାବରେ ଚିନ୍ତା କଲି ଏବଂ ଧର୍ମୀୟ ସମସ୍ୟା ତଥା ଈଶ୍ୱରଙ୍କ ବିଷୟରେ ଆଲୋଚନା ଓ ସମାଲୋଚନା କରିବାର ଅବକାଶ ପାଇଲି । ମାତ୍ର ମୁଁ ସେ ପର୍ଯ୍ୟନ୍ତ ଦୃଢ଼ ଈଶ୍ୱର ବିଶ୍ୱାସୀ ଥିଲି । ସେ ସମୟ ପର୍ଯ୍ୟନ୍ତ ମୁଁ ବନ୍ଧା ନ ହୋଇଥିବା ଲମ୍ବାବାଳ ରଖୁଥିଲି । କିନ୍ତୁ ମୁଁ ଶିଖଧର୍ମର କିମ୍ବା ଅନ୍ୟ କୌଣସି ଧର୍ମର ପୁରାଣ କଥା ଏବଂ ତତ୍ତ୍ୱରେ ବିଶ୍ୱାସ ସ୍ଥାପନ କରିପାରୁ ନଥିଲି । ଅଥଚ ଈଶ୍ୱରଙ୍କ ସତ୍ତାରେ ମୋର ଦୃଢ଼ ବିଶ୍ୱାସ ଥିଲା । ତା'ପରେ ମୁଁ କ୍ରାନ୍ତିକାରୀ ବିପ୍ଳବୀ ଦଳରେ ଯୋଗ ଦେଲି । ଯେଉଁ ପ୍ରଥମ ନେତାଙ୍କ ସହିତ ମୋର ସମ୍ପର୍କ ସ୍ଥାପିତ ହେଲା ସେ ଯଦିବା ଈଶ୍ୱରଙ୍କ ସତ୍ତା ବିଷୟରେ ସନ୍ଦୀହାନ ଥିଲେ କିନ୍ତୁ ଈଶ୍ୱରଙ୍କ ସତ୍ତାକୁ ଅସ୍ୱୀକାର କରିବାକୁ ସାହସ କରିପାରୁ ନଥିଲେ । ଈଶ୍ୱରଙ୍କ ବିଷୟରେ ମୋର ବାରମ୍ବାର ପ୍ରଶ୍ନ ଶୁଣି ସେ କହିଥିଲେ–''ଯେତେବେଳେ ଚାହୁଁଛ ସେତେବେଳେ ପ୍ରାର୍ଥନା କର ।'' ନାସ୍ତିକବାଦକୁ ଗ୍ରହଣ କରିବା ପାଇଁ ଏହି ମତବାଦରେ ସେତେ ସାହସ ନଥିଲା । ଯେଉଁ ଦ୍ୱିତୀୟ ନେତାଙ୍କ ସହିତ ମୁଁ ସମ୍ପର୍କିତ ହେଲି ସେ ଥିଲେ ଜଣେ ଦୃଢ଼ ବିଶ୍ୱାସୀ । ମୁଁ ତାଙ୍କ ନାମ ଉଲ୍ଲେଖ କରେ–ସେ ମୋର କମ୍ରେଡ଼ ଶଚୀନ୍ଦ୍ର ନାଥ ସାନ୍ୟାଲ । ସେ ବର୍ତ୍ତମାନ କରାଚୀ ରାଜଦ୍ରୋହ ଚକ୍ରାନ୍ତ ଅପରାଧରେ କଳାପାଣି ପାରିହେବା ଦଣ୍ଡ ଭୋଗୁଛନ୍ତି । ତାଙ୍କର ପ୍ରସିଦ୍ଧ ଏବଂ ଏକମାତ୍ର ପୁସ୍ତକ 'ବନ୍ଦୀଜୀବନ'ର ପ୍ରଥମ ପୃଷ୍ଠାରେ

ଈଶ୍ୱରଙ୍କ ମହିମା ପ୍ରଚଣ୍ଡ ଭାବରେ ଗାନ କରାଯାଇଛି । ତାଙ୍କ ଚିନ୍ତାର ପ୍ରକଟିତ ଅଂଶ ଭାବରେ ସେହି ଚମତ୍କାର ପୁସ୍ତକର ଦ୍ୱିତୀୟ ଭାଗର ଶେଷ ପୃଷ୍ଠାରେ ବେଦାନ୍ତବାଦ ଜନିତ ରହସ୍ୟବୋଧରୁ ଈଶ୍ୱରଙ୍କ ଉପରେ ପ୍ରଶଂସା ବୃଷ୍ଟି କରାଯାଇଛି । ୨୮ ଜାନୁୟାରୀ ୧୯୨୫ ରେ ଯେଉଁ ବୈପ୍ଲବିକ ପ୍ରଚାର ପତ୍ର ସାରା ଭାରତ ବର୍ଷରେ ବଣ୍ଟା ଯାଇଥିଲା ଅଭିଯୋଗକାରୀଙ୍କ ମତରେ, ତାହା ତାଙ୍କର ବୌଦ୍ଧିକ ଶ୍ରମରୁ ସଂଜାତ ବୋଲି କୁହାଯାଇଛି । ଗୁପ୍ତକର୍ମରେ ଏହା ଅବଶ୍ୟମ୍ଭାବୀ ଯେ ମୁଖ୍ୟନେତା ତାଙ୍କର ଅତ୍ୟନ୍ତ ପ୍ରିୟ ନିଜମତ କୁ ପ୍ରକାଶ କରୁଥିଲାବେଳେ ତାହା ସହିତ ଅନ୍ୟକର୍ମୀମାନଙ୍କର ମତଭେଦ ଥିଲେ ହେଁ, ସେମାନେ ତାଙ୍କ ସହିତ ସହମତ ହୋଇଥାନ୍ତି । ସେହି ପ୍ରଚାରପତ୍ରର ପୂରା ଏକ ପରିଚ୍ଛେଦ ସର୍ବଶକ୍ତିମାନ ଭଗବାନଙ୍କ ଲୀଳାନନ୍ଦ ଏବଂ କର୍ମ ବିଷୟରେ ଉତ୍ସର୍ଗ କରାଯାଇଥିଲା । ସେ ସବୁ ରହସ୍ୟବାଦର କଥା । ମୁଁ ଦର୍ଶାଇଦେବାକୁ ଚାହେଁ ଯେ ବିପ୍ଳବୀଙ୍କ ଦଳରେ ଭଗବାନଙ୍କ ବିଷୟରେ ଅବିଶ୍ୱାସର ବୀଜାଙ୍କୁର ସୁଦ୍ଧା ଘଟିନଥିଲା । ପ୍ରସିଦ୍ଧ ଚାରିଜଣ କାକୋରୀ ଶହୀଦ ଭଗବାନଙ୍କ ପ୍ରାର୍ଥନାରେ ତାଙ୍କର ଶେଷଦିନଗୁଡ଼ିକ ବିତାଇ ଥିଲେ । ରାମ ପ୍ରସାଦ ବିଶ୍‌ମିଲ୍ ଥିଲେ ଜଣେ ରକ୍ଷଣଶୀଳ ଆର୍ଯ୍ୟ ସମାଜୀ । ସାମ୍ୟବାଦ ଏବଂ କମ୍ୟୁନିଷ୍ଟବାଦର ବ୍ୟାପକ ଅଧ୍ୟୟନ କରିଥିବା ସତ୍ତ୍ୱେ ରାଜେନ୍ଦ୍ର ଲାହିଡ଼ି ଉପନିଷଦର ମନ୍ତ୍ର ଏବଂ ଗୀତା ଆବୃତ୍ତି କରିବାର ଇଚ୍ଛାକୁ ଦମନ କରି ପାରିନଥିଲେ । ମୁଁ ତାଙ୍କ ମଧ୍ୟରେ କେବଳ ଜଣେ ମାତ୍ର ବ୍ୟକ୍ତିଙ୍କୁ ଦେଖିଛି ଯେ କେବେହେଲେ ପ୍ରାର୍ଥନା କରି ନଥାନ୍ତି ଏବଂ କହିଥାନ୍ତି, ''ଦର୍ଶନଶାସ୍ତ୍ର ହେଉଛି ମଣିଷର ଦୁର୍ବଳତା କିମ୍ବା ଜ୍ଞାନର ସସୀମତାର ଫଳ ।'' ସେ ମଧ୍ୟ ସାରା ଜୀବନ ପାଇଁ ଦ୍ୱୀପାନ୍ତର ଦଣ୍ଡ ଭୋଗୁଛନ୍ତି । କିନ୍ତୁ ସେ ଈଶ୍ୱରଙ୍କ ଅସ୍ତିତ୍ୱକୁ ନାସ୍ତି କରିବା ପାଇଁ କେବେହେଲେ ସାହସ କରିନାହାନ୍ତି ।

ସେହି ସମୟ ପର୍ଯ୍ୟନ୍ତ ମୁଁ ଜଣେ ରୋମାଣ୍ଟିକ୍ ଆଦର୍ଶବାଦୀ ବିପ୍ଳବୀ ଥିଲି । ସେ ପର୍ଯ୍ୟନ୍ତ ଆମକୁ ନେତାମାନଙ୍କର ଅନୁସରଣ କରିବାକୁ ପଡୁଥିଲା । ବର୍ତ୍ତମାନ ସମୟ ଆସିଲା, ଯେତେବେଳେ ସମ୍ପୂର୍ଣ୍ଣ ଦାୟିତ୍ୱ ଆମକୁ ବହନ କରବାକୁ ହେଲା । କିଛିକାଳ ଆମ ଉତ୍ସାହୀ ସାଥୀ (କମ୍ରେଡ଼)ମାନେ ଏପରିକି ନେତାମାନେ ଆମକୁ ଥଟ୍ଟା ପରିହାସ କରିବାକୁ ଆରମ୍ଭ କଲେ । ମୋର ସନ୍ଦେହ ଜାତ ହୋଇଥିଲା, ହୁଏତ କୌଣସିଦିନ ମୁଁ ମଧ୍ୟ ଆମ ଯୋଜନାର ବ୍ୟର୍ଥତା ବିଷୟରେ ବିଶ୍ୱାସ କରିଯିବି । ତାହା ଥିଲା ମୋ ବୈପ୍ଳବିକ କର୍ମର ଏକ ପରିବର୍ତ୍ତନ ବିନ୍ଦୁ । ସେତେବେଳେ ''ଅଧ୍ୟୟନ କର'' ଏହି ଧ୍ୱନି ମୋର ମନ ଅଙ୍ଗନରେ ଘନଘନ ସ୍ପନ୍ଦିତ ହେଉଥିଲା । ବିରୋଧିଦଳ ପ୍ରୟୋଗ କରୁଥିବା ଯୁକ୍ତିମାନଙ୍କୁ ମୁକାବିଲା କରିବା ପାଇଁ ''ଅଧ୍ୟୟନ କରିବା'' ଏବଂ ନିଜ ସ୍ୱୀକୃତ ମତ ସପକ୍ଷରେ ସଜ୍ଜିତ ହେବା ପାଇଁ ଅଧ୍ୟୟନ କରିବା ହିଁ ଉପାୟ ବୋଲି ବୋଧ ହେଲା । ମୁଁ ଅଧ୍ୟୟନ କରିବାକୁ ଆରମ୍ଭ କଲି । ମୋର ପୂର୍ବଘୋଷିତ ଆସ୍ଥା ଓ ବିଶ୍ୱାସ ଏକ ସ୍ମରଣୀୟ ପରିବର୍ତ୍ତନ ମଧ୍ୟରେ ଗତି କଲା । ମୋର ପୂର୍ବବର୍ତ୍ତୀ ବିପ୍ଳବୀମାନେ ହିଂସାତ୍ମକ କର୍ମ ପଦ୍ଧତିରେ ଯେଉଁ ପୁଲକ

ଅନୁଭବ କରୁଥିଲେ, ତାହା ଦୂରୀଭୂତ ହୋଇ ସେ ସ୍ଥାନରେ ଗମ୍ଭୀର ପ୍ରତ୍ୟୟମାନ ସ୍ଥାପିତ ହେଲା । ରହସ୍ୟବାଦର ପ୍ରୟୋଜନ ରହିଲା ନାହିଁ । ଅନ୍ଧବିଶ୍ୱାସର ଆଉ ପ୍ରୟୋଜନ ନଥିଲା । ବାସ୍ତବବାଦ ଆମର ସ୍ୱୀକୃତ ମତ ହୋଇଗଲା । କେବଳ ଭୟଙ୍କର ପ୍ରୟୋଜନ ସମୟରେ ଶକ୍ତି ପ୍ରୟୋଗକୁ ଯଥାର୍ଥ ବୋଲି, ଏବଂ ଜନସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ଆନ୍ଦୋଳନରେ ଅହିଂସାକୁ ଅପରିହାର୍ଯ୍ୟ ବୋଲି ଗ୍ରହଣ କରାଗଲା । ଏସବୁ ତ ପଦ୍ଧତି ପାଇଁ ହେଲା । ଅସଲ ବିଷୟ ହେଉଛି ଆମେ ଯେଉଁଥି ପାଇଁ ସଂଗ୍ରାମ କରୁଛୁ, ସେହି ଆଦର୍ଶର ସ୍ୱଷ୍ଟ ଧାରଣା କରିବାକୁ ବାକି ରହିଲା । ଅନ୍ୟପକ୍ଷରେ କର୍ମକ୍ଷେତ୍ରରେ ଆମ ପାଇଁ କୌଣସି ବିଶେଷ କାର୍ଯ୍ୟକ୍ରମ ସ୍ଥିର କରାଯାଇ ନଥିଲା । ସେହି ସମୟରେ ବିଶ୍ୱର ବିଭିନ୍ନ ବିପ୍ଳବର ଆଦର୍ଶ ସମ୍ବନ୍ଧରେ ଅଧ୍ୟୟନ କରିବା ପାଇଁ ମୁଁ ପ୍ରଚୁର ସୁଯୋଗ ଲାଭ କରିଥିଲି । ଅରାଜକତାର ନେତା ବାକୁନିନଙ୍କ ବିଷୟରେ ମୁଁ ଅଧ୍ୟୟନ କରି କମ୍ୟୁନିଷ୍ଟ ମତବାଦର ଜନକ ମାର୍କ୍ସଙ୍କ ବିଷୟରେ ମଧ୍ୟ କିଛି କିଛି ଅଧ୍ୟୟନ କଲି । ନିଜ ଦେଶର ବିପ୍ଳବକୁ ସଫଳତାର ସହିତ ଚଳାଇ ଆଣିଥିବା ଲେନିନ, ଟ୍ରଟସ୍କି ଏବଂ ଅନ୍ୟମାନଙ୍କ ବିଷୟରେ ଅଧିକ ଜାଣିଲି । ସେମାନେ ସମସ୍ତେ ନାସ୍ତିକବାଦୀ ଥିଲେ । ବାକୁନିନ୍‌ଙ୍କ ଗ୍ରନ୍ଥ ''ଈଶ୍ୱର ଓ ରାଷ୍ଟ୍ର'' କୁ ଯଦିବା ଆଂଶିକ ଭାବରେ ମୁଁ ପ୍ରାପ୍ତ ହୋଇଥିଲି, ତାହାହିଁ ଥିଲା ମୋ ପାଇଁ ଚମତ୍କାର ବିଷୟଗତ ଅଧ୍ୟୟନ । ପରେ ନିର୍ଲମ୍ବ ସ୍ୱାମୀଙ୍କର ''ସାଧାରଣ ଜ୍ଞାନ'' ପୁସ୍ତକ ମୋ ହାତକୁ ଆସିଲା । ଏହା ଥିଲା ଏକ ପ୍ରକାର ରହସ୍ୟବାଦୀ ନାସ୍ତିକବାଦ । ତାହା ମୋର ଅତ୍ୟନ୍ତ ଆଗ୍ରହର ବିଷୟ ଥିଲା । ୧୯୨୬ ସୁଦ୍ଧା ମୁଁ ସ୍ଥିର ସିଦ୍ଧାନ୍ତରେ ପହଞ୍ଚିଲି ଯେ ଯେଉଁ ପରମ ସତ୍ତା ଏହି ବିଶ୍ୱକୁ ସୃଷ୍ଟି କରିଛନ୍ତି, ନିୟମନ କରିଛନ୍ତି ଓ ନିୟନ୍ତ୍ରିତ କରୁଛନ୍ତି, ତାଙ୍କ ଅସ୍ତିତ୍ୱ ବିଷୟକ ତଥ୍ୟ ସମ୍ପୂର୍ଣ୍ଣ ଅମୂଳକ । ମୋର ଏହି ଅବିଶ୍ୱାସକୁ ମୁଁ ପ୍ରକାଶ କରିଦେଲି । ମୋ ବନ୍ଧୁମାନଙ୍କ ସହିତ ମୁଁ ଏହି ବିଷୟ ଖୋଲାଖୋଲି ଆଲୋଚନା କଲି । ମୁଁ ଜଣେ ଜଣାଶୁଣା ନାସ୍ତିକ ହୋଇଗଲି । କିନ୍ତୁ ତାହାର ଅର୍ଥ କଅଣ ସେ କଥା ମୁଁ ବର୍ତ୍ତମାନ ଆଲୋଚନା କରିବି ।

୧୯୨୭ ମସିହା ମେ ମାସରେ ମୁଁ ଲାହୋରରେ ବନ୍ଦୀ ହେଲି । ମୋର ବନ୍ଦୀ ହେବା ଅଚାନକ ଭାବରେ ଘଟିଥିଲା । ପୋଲିସ ଯେ ମୋତେ ଖୋଜୁଛି, ଏ ବିଷୟରେ କୌଣସି ଧାରଣା ନଥିଲା । ଗୋଟିଏ ବଗିଚା ଭିତରେ ଗଲାବେଳେ ମୁଁ ଦେଖିଲି ଯେ ପୋଲିସମାନେ ମୋତେ ଘେରି ଯାଇଛନ୍ତି । ମୋ ପାଇଁ ଆଶ୍ଚର୍ଯ୍ୟର କଥା ଯେ ମୁଁ ସେତେବେଳେ ବିଶେଷ ଶାନ୍ତ ଭାବରେ ରହିଥିଲି । କୌଣସି ଚମକ ପାଇ ନଥିଲି କିମ୍ବା କୌଣସି ଉଦ୍‌ବେଗର ବଶବର୍ତ୍ତୀ ହୋଇ ନଥିଲି । ମୋତେ ପୋଲିସ ହାଜତକୁ ନିଆଗଲା । ତା' ପରଦିନ ମୋତେ ରେଳବାଇ କାରାଗାରକୁ ଯିବାକୁ ହେଲା, ଯେଉଁଠି ମୁଁ ସମ୍ପୂର୍ଣ୍ଣ ଏକମାସ ବିତାଇଲି । ଅନେକ ଦିନ ପୋଲିସ୍ କର୍ମଚାରୀଙ୍କ ସହିତ କଥାବାର୍ତ୍ତା ହେବା ଫଳରେ ମୁଁ ଅନୁମାନ କଲି ଯେ ସେମାନେ କାକୋରୀ ଦଳ ସହିତ ମୋର ସମ୍ପର୍କ ଓ

ଅନ୍ୟାନ୍ୟ ବୈପ୍ଲବିକ ଆନ୍ଦୋଳନର କର୍ମ ବିଷୟରେ ସମ୍ବାଦ ପାଇଥିଲେ । ସେମାନେ ମୋତେ କହିଲେ ଯେ ଯେତେବେଳେ ବିଚାର ଚାଲିଥିଲା ମୁଁ ଲକ୍ଷ୍ନୌ ଯାଇଥିଲି ଓ ସେମାନଙ୍କର ଉଦ୍ଧାର ନିମିତ୍ତ କେତେକ ଯୋଜନା ସମ୍ପର୍କରେ ପ୍ରସ୍ତାବ ଦେଇଥିଲି । ତାଙ୍କଠାରୁ ସମ୍ମତି ପାଇବାପରେ ଆମେ କିଛି ବୋମା ସଂଗ୍ରହ କରିଥିଲୁ । ପରୀକ୍ଷାମୂଳକ ଭାବରେ ଗୋଟିଏ ବୋମା ୧୯୨୬ ମସିହା ଦଶହରା ଅବସରରେ ଜନଗହଳିରେ ଫୁଟା ହୋଇଥିଲା । ସେମାନେ ପୁଣି ମୋତେ କହିଲେ ମୋ ସ୍ୱାର୍ଥରେ, ବିପ୍ଲବୀ ଦଳର କାର୍ଯ୍ୟକଳାପ ଉପରେ ଯଦି ମୁଁ କିଛି ଆଲୋକପାତ କରିପାରେ ମୁଁ ବନ୍ଦୀ ହେବି ନାହିଁ ବରଂ ମୋତେ ମୁକ୍ତ କରିଦିଆଯିବ ଏବଂ ମୁଁ ନ ମାଗୁଣୁ ମୋତେ ପୁରସ୍କାର ଦିଆଯିବ ଏବଂ ବିଚାରାଳୟରେ ସରକାରୀ ସାକ୍ଷୀ ଭାବରେ ମୋତେ ମଧ୍ୟ ଉପସ୍ଥାପନ କରାଯିବ ନାହିଁ । ମୁଁ ଏହି ପ୍ରସ୍ତାବରେ ନ ହସି ରହିପାରିଲି ନାହିଁ । ଏହା ଏକ ଅର୍ଥହୀନ ପ୍ରସଙ୍ଗ ଥିଲା । ଯେଉଁମାନେ ଆମ ସଂଗରେ ସହମତ ଥିଲେ ସେମାନେ ନିରୀହ ଲୋକଙ୍କ ଉପରେ ବୋମା ପକାନ୍ତି ନାହିଁ । ଦିନେ ସକାଳୁ ମିଃ. ନିଉମ୍ୟାନ୍ ସେ କାଳର ସି.ଆଇ.ଡ଼ି ସିନିୟର୍ ସୁପରିଟେଣ୍ଡେଣ୍ଟ୍ ମୋ ପାଖକୁ ଆସିଲେ ଏବଂ ମୋ ସହିତ ସହୃଦୟତା ପୂର୍ଣ୍ଣ କଥାବାର୍ତ୍ତା ପରେ ସେ ମୋତେ ଅତ୍ୟନ୍ତ ଦୁଃଖଦାୟକ ଖବର ଦେଲେ । ଯଦି ସେମାନେ ଯେପରି ଚାହୁଁଛନ୍ତି ତାଙ୍କପାଇଁ ମୁଁ ସେପରି କଥା ନ ଜଣାଏଁ ସେମାନେ ମୋତେ ବଳପୂର୍ବକ ବିଚାର ପାଇଁ ପଠାଇବେ । କାକୋରୀ କେସ୍ ସମ୍ପର୍କରେ ଆମେ ଯୁଦ୍ଧ ଯୋଗାଡ଼ କରିବାକୁ ଚକ୍ରାନ୍ତ କରିଥିଲୁ ଏବଂ ଦଶହରାରେ ଯେଉଁ ବୋମା ପଡ଼ିଲା ସେହି ପାଶବିକ ହତ୍ୟା ପାଇଁ ଆମେ ଦାୟୀ ରହିବୁ । ସେମାନେ ମୋତେ କହିଲେ ଯେ ତାଙ୍କ ପାଖରେ ଯଥେଷ୍ଟ ପ୍ରମାଣ ଅଛି ଯାହାଦ୍ୱାରା ମୋତେ ଫାଶୀ ଦିଆଯିବ । ସେ ସମୟରେ ମୁଁ ବିଶ୍ୱାସ କରିଥିଲି ଯଦି ବା ମୁଁ ସମ୍ପୂର୍ଣ୍ଣ ନିରୀହ ତଥାପି ପୋଲିସ୍ ଚାହିଁଲେ ତାହା ସେ କରିପାରିବେ । ସେହିଦିନ କେତେକ ପୋଲିସ୍ ଅଫିସର୍ ଆସି ମୋତେ ଦିନକୁ ଦୁଇଥର ଈଶ୍ୱରଙ୍କୁ ପ୍ରାର୍ଥନା କରିବାକୁ ପ୍ରବର୍ତ୍ତାଇଲେ । ଏତେବେଳକୁ ମୁଁ ଜଣେ ନାସ୍ତିକ ହୋଇଯାଇଥିଲି । ମୁଁ ମୋ ଭିତରେ ସ୍ଥିର କରିବାକୁ ଚାହିଁଲି ଯେ ହୁଏତ ଶାନ୍ତିସୁଖ ସମୟରେ ମୁଁ ନିଜକୁ ନାସ୍ତିକ ବୋଲି ଗର୍ବ କରିବି କିମ୍ବା ଏଭଳି କଠିନ ସମୟରେ ମଧ୍ୟ ମୁଁ ସେଇଆ କରିବି । ମୁଁ ମୋ ନିୟମରେ ଦୃଢ଼ ରହିଲି । ବହୁ ବିଚାର ପରେ ସ୍ଥିର କଲି ଯେ ଈଶ୍ୱରଙ୍କ ସ୍ଥିତିରେ ବିଶ୍ୱାସ କରିବା ଏବଂ ପ୍ରାର୍ଥନା କରିବା ମୁଁ କରିପାରିବି ନାହିଁ । ମୁଁ ତାହା କରି ନଥିଲି । ତାହା ହିଁ ଥିଲା ମୋ ପାଇଁ ପ୍ରକୃତ ପରୀକ୍ଷା ଏବଂ ତହିଁରେ କୃତକାର୍ଯ୍ୟ ହୋଇଗଲି । କେବେହେଲେ ମୁହୂର୍ତ୍ତକ ପାଇଁ ମୁଁ ଇଚ୍ଛା କରି ନଥିଲି ଯେ ମୋ ବେକକୁ ସୁରକ୍ଷିତ କରିବା ଲାଗି ଅନ୍ୟ କେତେକ କଥାକୁ ଜଳାଞ୍ଜଳି ଦେବି । ଏହିପରି ମୁଁ ଜଣେ ଦୃଢ଼ ନାସ୍ତିକ ଥିଲି ଏବଂ ଏବେ ବି ତାହା ହୋଇ ରହିଆସିଛି । ଏଭଳି ପରୀକ୍ଷାର ସମ୍ମୁଖୀନ ହେବା ସହଜ କଥା ନଥିଲା । ଆସ୍ତିକତା (ଭଗବଦ୍ ବିଶ୍ୱାସ) ଜୀବନର କଠୋରତାକୁ କୋମଳ କରିଦିଏ । 'ବିଶ୍ୱାସ' ଭାବ ଏପରିକି ତାହାକୁ ସୁଖମୟ

କରିଦିଏ । ଭଗବାନଙ୍କ ଉପରେ ହିଁ ନିର୍ଭର କରିବାକୁ ପଡ଼ିଥାଏ । ପ୍ରବଳ ତୋଫାନ ଓ ଝଡ଼ ମଧ୍ୟରେ ନିଜ ଗୋଡ଼ରେ ଛିଡ଼ା ହୋଇ ରହିବା କୌଣସି ପିଲାଖେଳ ନୁହେଁ । ଏହିଭଳି ପରୀକ୍ଷା ମୁହୂର୍ତ୍ତରେ ଯିଦି କିଛି ଔଦ୍ଧତ୍ୟ ଥାଏ ତାହା ବାଷ୍ପୀକୃତ ହୋଇ ଉଡ଼ିଯାଏ, ଏବଂ ମଣିଷ ଚାହିଁଲେ ମଧ୍ୟ ସାଧାରଣ ବିଶ୍ୱାସ ମାନଙ୍କୁ ଅସ୍ୱୀକାର କରିବାକୁ ସାହସୀ ହୋଇପାରେ ନାହିଁ । ଯଦି ସେ ତାହା କରେ ଏଥିରୁ ସିଦ୍ଧାନ୍ତ କରିବାକୁ ହେବ ଯେ ଔଦ୍ଧତ୍ୟ ବ୍ୟତୀତ ତାହାର ଆଉ କୌଣସି ବଳ ଉପରେ ନିର୍ଭର କରୁଛି ତାହାହିଁ ହେଉଛି ବର୍ତ୍ତମାନର ଅବସ୍ଥା । ରାୟ କଅଣ ହେବ ତାହା ସମସ୍ତଙ୍କୁ ଜଣାପଡ଼ିଲାଣି । ସପ୍ତାହକ ମଧ୍ୟରେ ଏହା ଘୋଷିତ ହେବ । ଏଥିରେ ମୋ ଜୀବନକୁ ମୁଁ ଏକ ଆଦର୍ଶ ସକାଶେ ବଳିଦେବାକୁ ଯାଉଛି, ଏହାଠାରୁ ଆଉ କଅଣ ବା ଆଶ୍ୱାସନା ଥାଇପାରେ ? ଜଣେ ଈଶ୍ୱର ବିଶ୍ୱାସୀ ହିନ୍ଦୁ ଆଶା କରିପାରନ୍ତି ଯେ ସେ ଜଣେ ରାଜା ହୋଇ ପୁନର୍ଜନ୍ମ ଲାଭ କରିପାରନ୍ତି । ଜଣେ ମୁସଲମାନ କିମ୍ବା ଖ୍ରୀଷ୍ଟିୟାନ କଳ୍ପନା କରିପାରନ୍ତି ଯେ ସେ ସ୍ୱର୍ଗଲୋକରେ ନାନା ସୁଖ ସମୃଦ୍ଧି ଭୋଗ କରି ଏହି ତ୍ୟାଗ ଓ ବଳିଦାନ ପାଇଁ ପୁରସ୍କୃତ ହେବେ । କିନ୍ତୁ ମୁଁ ବା କଅଣ ଆଶା କରିପାରିବି ଯେଉଁ ମୁହୂର୍ତ୍ତରେ ଫାଶୀ ଦଉଡ଼ି ମୋ ବେକ ଚାରିକଡ଼େ ଗୁଡ଼େଇ ହୋଇଯିବ ଏବଂ ମୋ ପାଦତଳୁ ପଟା ଖୋଲି ଦିଆଯିବ । ତାହା ହିଁ ହେବ ପରିଣାମରେ ଅନ୍ତିମ ମୁହୂର୍ତ୍ତ ଏବଂ ଶେଷ ମୁହୂର୍ତ୍ତ । ମୁଁ, ଅଥବା ତାତ୍ତ୍ୱିକ ଶବ୍ଦରେ ବ୍ୟାଖ୍ୟା କରାଯାଉଥିବା ମୋର ଜୀବାତ୍ମା ସେହିଠାରେ ହିଁ ଶେଷ ହୋଇଯିବ । ଆଉ ଆଗକୁ କିଛି ନଥିବ । କୌଣସି ମହାନ୍ ପରିସମାପ୍ତି ନଥିବା ଅଳ୍ପଦିନର ସଂଗ୍ରାମ ହେବ ଶ୍ରେଷ୍ଠ ପୁରସ୍କାର । ଯଦି ମୁଁ ସାହସର ସହିତ ଏହି ଦୃଷ୍ଟିରୁ ତାହା ଗ୍ରହଣ କରିପାରେ, ଏହା ହିଁ ହେବ ଶେଷକଥା । ଏଠାରେ କିମ୍ବା ଅନ୍ୟ କେଉଁଠାରେ ପୁରସ୍କୃତ ହେବା ପାଇଁ କୌଣସି ବ୍ୟକ୍ତିଗତ ସ୍ୱାର୍ଥଲିପ୍ସା ନରଖି ସମ୍ପୂର୍ଣ୍ଣ ଅନାସକ୍ତ ଭାବରେ ସ୍ୱାଧୀନତା ପାଇଁ ମୁଁ ଜୀବନକୁ ନିୟୋଜିତ କରିଥିଲି । କାରଣ ତାହା ବିନା ମୁଁ ଆଉ କିଛି କରିପାରି ନଥାନ୍ତି । ଯେଉଁଦିନ ଆମେ ଦେଖିବା ଯେ ବହୁ ସଂଖ୍ୟକ ନରନାରୀ ଏହି ମନୋବୃତ୍ତି ପୋଷଣ କରି ଆଉ କୌଣସି କାର୍ଯ୍ୟରେ ନିୟୋଜିତ ନ ହୋଇ ମାନବ ଜାତିର ସେବା ଏବଂ ଯାତନା ଜର୍ଜରିତ ମାନବତାର ମୁକ୍ତି ପାଇଁ ନିଜକୁ ଉତ୍ସର୍ଗ କରିଛନ୍ତି; ସେହିଦିନ ମୁକ୍ତିର ନବଯୁଗ ଉଦ୍‌ଘାଟିତ ହେବ । ରାଜା ହେବା ପାଇଁ ନୁହେଁ କିମ୍ବା ଏଠାରେ ଆଉ କୌଣସି ପୁରସ୍କାର ଜିଣିବା ଲାଗି ନୁହେଁ, ଆର ଜନ୍ମରେ କିମ୍ବା ମୃତ୍ୟୁପରେ ସ୍ୱର୍ଗଲୋକରେ ସେମାନେ ଦମନକାରୀ, ଶୋଷଣକାରୀ ଏବଂ ଅତ୍ୟାଚାରୀଙ୍କୁ ମୁକାବିଲା କରିବା ପାଇଁ ସେମାନେ ଉତ୍ସାହିତ ହେବେ କି ? କିନ୍ତୁ ଦାସତ୍ୱର ଯୁଆଳି ମାନବ ଜାତିର କାନ୍ଧରୁ ଓହ୍ଲାଇ ଦେବା ପାଇଁ ଏବଂ ମୁକ୍ତି ଓ ଶାନ୍ତିର ପ୍ରତିଷ୍ଠା ପାଇଁ ସେମାନେ ତାଙ୍କ ବ୍ୟକ୍ତିଗତ ଜୀବନରେ ଏହି ବିପଦପୂର୍ଣ୍ଣ ଏବଂ ଆଦର୍ଶଗତ କଳ୍ପନାରେ ଥିବା ଏକମାତ୍ର ମହନୀୟ ପଥ ଅନୁସରଣ କରିବେ କି ? ଏହି ମହାନ୍ କର୍ମରେ ତାଙ୍କର ଗର୍ବକୁ ଭୁଲ୍ ଭାବରେ ଔଦ୍ଧତ୍ୟ ବୋଲି ବ୍ୟାଖ୍ୟା କରାଯାଇପାରିବ କି ? ଏହିଭଳି ଏକ ନିନ୍ଦନୀୟ ନାମ

ଉଚ୍ଚାରଣ କିଏ କରିବ କି ? ତାଙ୍କୁ ମୁଁ କହିବି ସେ ହୁଏତ ବୋକା କିମ୍ବା ଅଜ୍ଞ ବ୍ୟକ୍ତି । ତାଙ୍କୁ କ୍ଷମା କରିଦିଅ; କାରଣ ସେମାନଙ୍କ ହୃଦୟରେ ଉଠୁଥିବା ମହାନ୍ ବେଦନା, ଭାବାବେଗର ଗଭୀରତା ଅନୁଭବ କରିପାରନ୍ତି ନାହିଁ । ଏହା ବ୍ୟତୀତ ଅନ୍ୟ ଦୂରାଗ୍ରହ ପଡ଼ିଥିବାରୁ ତା'ର ହୃଦୟ ଏକ ମୃତ ମାଂସପିଣ୍ଡୁଳା, ତା'ର ଆଖିମାନେ ଦୁର୍ବଳ । ଆତ୍ମନିର୍ଭରଶୀଳତାକୁ ସର୍ବଦା ଔଦ୍ଧତ୍ୟ ବୋଲି ଅର୍ଥ କରାଯାଇପାରେ । ଏହା ଦୁଃଖର କଥା ଏବଂ ଯନ୍ତ୍ରଣାଦାୟକ, କିନ୍ତୁ ଏଥିପାଇଁ ଆଉ ଉପାୟ ନାହିଁ । ତୁମେ ଯାଅ ଏବଂ ପ୍ରଚଳିତ ବିଶ୍ୱାସ ବିରୁଦ୍ଧରେ ଠିଆ ହୁଅ । ତୁମେ ଜଣେ ନେତାଙ୍କୁ ସମାଲୋଚନା କର ଯାହାଙ୍କୁ ସମସ୍ତ ସମାଲୋଚନାର ଉର୍ଦ୍ଧ୍ୱରେ ବୋଲି ବିଚାର କରାଯାଏ କାରଣ ତାଙ୍କୁ ଅଭ୍ରାନ୍ତ ବୋଲି ଗ୍ରହଣ କରାଯାଇଛି । ତୁମ ଯୁକ୍ତିର ଶକ୍ତି ସାଧାରଣ ଜନତାଙ୍କୁ ତୁମକୁ ନିନ୍ଦା କରି ବୃଥାଭିମାନୀ ବୋଲି ପ୍ରତିପାଦିତ କରିବ । ଏହା ମାନସିକ ଆବଦ୍ଧତାର ଫଳ । ସମାଲୋଚନା ଏବଂ ସ୍ୱାଧୀନ ଚିନ୍ତା ଏ ଦୁଇଟି ବିପ୍ଳବୀ ଲାଗି ଅପରିହାର୍ଯ୍ୟ ଗୁଣ । ଯେହେତୁ ମହାତ୍ମାଜୀ ହେଉଛନ୍ତି ମହାନ୍ ତେଣୁ ତାହାଙ୍କୁ କେହି ସମାଲୋଚନା କରିବା ଉଚିତ ନୁହେଁ । ଯେହେତୁ ସେ ଉର୍ଦ୍ଧ୍ୱକୁ ଉଠିଯାଇଛନ୍ତି ତେଣୁ ରାଜନୀତି କ୍ଷେତ୍ରରେ ହେଉ କିମ୍ବା ଧର୍ମ କ୍ଷେତ୍ରରେ ହେଉ, ଅର୍ଥନୀତିରେ ହେଉ କିମ୍ବା ନୀତିଶାସ୍ତ୍ରରେ ହେଉ ସେ ଯାହା କହିଛନ୍ତି ତାହା ସତ୍ୟ ବୋଲି ବିବେଚିତ ହେବ । ତୁମେ ଏକମତ ହୁଅକି ନ ହୁଅ ତୁମକୁ କହିବାକୁ ହେବ "ହଁ ତାହା ସତ୍ୟ" । ଏହି ମାନସିକତା ଅଗ୍ରଗତି ଆଡ଼କୁ ନିଏ ନାହିଁ । ବରଂ ଏହା ଅତ୍ୟନ୍ତ ସ୍ପଷ୍ଟ ଭାବରେ ପ୍ରତିକ୍ରିୟାଶୀଳ ଅଟେ । ଯେହେତୁ ଆମ ପୂର୍ବ ପୁରୁଷମାନେ କୌଣସି ଏକ ମହାନ୍ ସତ୍ତା, ସର୍ବଶକ୍ତିମାନ ଈଶ୍ୱରଙ୍କ ବିଷୟରେ ବିଶ୍ୱାସ ସ୍ଥାପନ କରିଛନ୍ତି, ତାହାର ଯଥାର୍ଥତାକୁ ବିରୋଧ କରୁଥିବା କିମ୍ବା ସେହି ମହାନ୍ ସତ୍ତାର ଅସ୍ତିତ୍ୱକୁ ଅସ୍ୱୀକାର କରୁଥିବା ବ୍ୟକ୍ତିଙ୍କ ଧର୍ମଭ୍ରଷ୍ଟ ପାଇଁ ବିରୁଦ୍ଧ ଯୁକ୍ତିର ସାମର୍ଥ୍ୟ ନଥିବ, ଏବଂ ତାହାର ଆତ୍ମବଳ ସର୍ବଶକ୍ତିମାନଙ୍କ କୋପଜନିତ ଦୁର୍ଭାଗ୍ୟ ଭୋଗ ଦ୍ୱାରା ଯଦି ଅନମନୀୟ ହୋଇ ରହିବ, ତାହାକୁ କଅଣ ବୃଥାଭିମାନୀ ବୋଲି ଏବଂ ତାହାର ଆତ୍ମବଳକୁ ଔଦ୍ଧତ୍ୟ ବୋଲି କୁହାଯାଇପାରିବ ! ତା'ହେଲେ ଏତେ ଦୀର୍ଘ ଆଲୋଚନାରେ ସମୟ ନଷ୍ଟ କରିବା କି ପ୍ରୟୋଜନ ? ସମସ୍ତ ବିଷୟଟିକୁ ଯୁକ୍ତିଦ୍ୱାରା ପରୀକ୍ଷା କରିନେବାର କି ଆବଶ୍ୟକତା ଅଛି ? ଜନସାଧାରଣଙ୍କ ପାଖରେ ଏହି ପ୍ରଶ୍ନ ପ୍ରଥମଥର ପାଇଁ ଉପସ୍ଥାପିତ ହୋଇଛି ଏବଂ ବାସ୍ତବଧର୍ମୀ ସରଣୀରେ ପ୍ରଥମଥର ପାଇଁ ଆଲୋଚିତ ହେଉଥିବାରୁ ଏତେ ଦୀର୍ଘ ବିଚାରର ପ୍ରୟୋଜନ ପଡୁଛି ।

ପ୍ରଥମ ପ୍ରଶ୍ନ ବିଷୟରେ, ମୋ ବିଚାରରେ ଏହା ସ୍ପଷ୍ଟ ହୋଇଯାଇଛି ଯେ ମୋତେ ଯାହା ନାସ୍ତିକ କରିଛି, ତାହା ଔଦ୍ଧତ୍ୟ ନୁହେଁ । ମୋର ଯୁକ୍ତି ପଦ୍ଧତି ସେଭଳି ପ୍ରତୀତି ଜାତ କରାଉଛି କି ନାହିଁ, ତାହା ମୁଁ ନୁହେଁ, ମୋର ପାଠକମାନେ ବିଚାର କରିବେ । ବର୍ତ୍ତମାନ ପରିସ୍ଥିତିରେ ମୁଁ ଜାଣେ ଯେ ଈଶ୍ୱର ବିଶ୍ୱାସ ଫଳରେ ମୋ ଜୀବନ ସହଜତର, ମୋ ଭାର

ଲଘୁତର ହୋଇପାରିଥାନ୍ତା । ଈଶ୍ୱରଙ୍କଠାରେ ଅବିଶ୍ୱାସ ଫଳରେ ମୋ ପରିସ୍ଥିତି ଅତୀବ ଶୁଷ୍କ, ନୀରସ ହୋଇଯାଇଛି, ଏବଂ ତାହା ଅଧିକ ରୁକ୍ଷ ରୂପ ଧାରଣ କରିପାରେ । ଯତ୍‌ସାମାନ୍ୟ ରହସ୍ୟବାଦ ତାହାକୁ କବିତ୍ୱମୟ କରିଦେଇପାରିବ । କିନ୍ତୁ ମୋ ଭାଗ୍ୟକୁ ସମ୍ମୁଖୀନ ହେଉଥିବାବେଳେ ମୁଁ ସେଭଳି କୌଣସି ମାଦକ ଦ୍ରବ୍ୟର ଆଶ୍ରୟ ନେବାକୁ ଚାହୁଁନାହିଁ ।

ମୁଁ ଜଣେ ବାସ୍ତବବାଦୀ । ମୁଁ ଯୁକ୍ତି ସାହାଯ୍ୟରେ ମୋ ଭିତରେ ଥିବା ବୃତ୍ତିକୁ ପରାଭୂତ କରିବାକୁ ଚାହୁଁଛି । ମୋ ଲକ୍ଷ୍ୟସାଧନାରେ ମୁଁ ସବୁବେଳେ ସଫଳକାମ ହୋଇପାରି ନାହିଁ । କିନ୍ତୁ ମନୁଷ୍ୟର କର୍ତ୍ତବ୍ୟ ହେଉଛି, ଚେଷ୍ଟା କରିବା, ଉଦ୍ୟମ କରିବା; ସଫଳତା, ଆକସ୍ମିକତା ଓ ପରିସ୍ଥିତି ଉପରେ ନିର୍ଭର କରେ ।

ଦ୍ୱିତୀୟ ପ୍ରଶ୍ନ ପାଇଁ କୁହାଯାଇପାରିବ ଯେ ଯଦି ତାହା ଔଦ୍ଧତ୍ୟ ନୁହେଁ, ତେବେ ତାହା ପାଇଁ ଅବଶ୍ୟ କିଛି ଯୌକ୍ତିକତା ଥିବ, ଯାହା ବଳରେ ପ୍ରାଚୀନ ତଥା ଅଧୁନାତନ କାଳରେ ପ୍ରଭାବ ବିସ୍ତାର କରି ରହିଥିବା ଈଶ୍ୱରଙ୍କ ଅସ୍ତିତ୍ୱ ବିଷୟକ ବିଶ୍ୱାସକୁ ଅସ୍ୱୀକାର କରାଯାଇପାରିବ । ହଁ, ମୁଁ ସେ ବିଷୟକୁ ବର୍ତ୍ତମାନ ଆସୁଛି । ମୋ ମତରେ ଯେଉଁ ବ୍ୟକ୍ତିର ଯୁକ୍ତି କରିବା ସାମର୍ଥ୍ୟ ରହିଛି, ସେ ନିଜ ପରିସ୍ଥିତିକୁ ବିଚାର କରିବା ପାଇଁ ସେ ଯୁକ୍ତି ପ୍ରୟୋଗ କରିଥାଏ । ଯେଉଁଠି ପ୍ରତ୍ୟକ୍ଷ ପ୍ରମାଣ ନଥାଏ, ସେଠାରେ ଦାର୍ଶନିକ ବିଚାର ମୁଖ୍ୟାଂଶ ଗ୍ରହଣ କରେ । ମୁଁ ଆଗରୁ କହିଛି ଯେ, ମୋର କେତେକ ବିପ୍ଳବୀବନ୍ଧୁ କହିଥାନ୍ତି ଯେ ଦର୍ଶନଶାସ୍ତ୍ରଗତ ବିଚାର ମନୁଷ୍ୟର ଦୁର୍ବଳତାରୁ ହିଁ ଜାତ ହୋଇଥାଏ । ଆମର ପୂର୍ବ ପୁରୁଷମାନଙ୍କର ଯେତେବେଳେ ଅବସର ସମୟ ଯଥେଷ୍ଟ ଥିଲା, ସେମାନେ ଏହି ଜଗତର ରହସ୍ୟର ସମାଧାନ ପାଇଁ ସଚେଷ୍ଟ ଥିଲେ । ଏହି ଜଗତର ଅତୀତ, ବର୍ତ୍ତମାନ ଏବଂ ଭବିଷ୍ୟତ ତଥା ଏହା କାହିଁକି ଅଛି ଏବଂ କେଉଁଠାରୁ ଆସିଛି ବିଚାର କରୁଥିଲେ । ପ୍ରତ୍ୟକ୍ଷ ପ୍ରମାଣର ଅତୀବ ଅଭାବରୁ ଯେ ଯାହାର ପଥରେ ସମସ୍ୟାର ସମାଧାନ କରୁଥିଲେ । ତେଣୁ ବିଭିନ୍ନ ଧର୍ମୀୟ ଚିନ୍ତାଧାରାରେ ଏତେ ମୌଳିକ ପାର୍ଥକ୍ୟ ଦେଖିବାକୁ ମିଳୁଛି । ବେଳେବେଳେ ତାହା ପୁଣି ପରସ୍ପର ବିରୋଧୀ ରୂପ ଧାରଣ କରିଛନ୍ତି । କେବଳ ଯେ ପ୍ରାଚ୍ୟ ଓ ପାଶ୍ଚାତ୍ୟରେ ପାର୍ଥକ୍ୟ ଦେଖିବାକୁ ମିଳେ ତାହା ନୁହେଁ । ପ୍ରତ୍ୟେକ ଗୋଲାର୍ଦ୍ଧରେ ସେ ଦର୍ଶନମାନେ ମଧ୍ୟ ପୃଥକ ଅଟନ୍ତି । ପ୍ରାଚ୍ୟଧର୍ମମାନଙ୍କ ମଧ୍ୟରେ ମୁସଲମାନ ଧର୍ମ, ହିନ୍ଦୁଧର୍ମର ଆଦୌ ଅନୁରୂପ ନୁହେଁ । ଭାରତ ବର୍ଷରେ ବୌଦ୍ଧବାଦ ଓ ଜୈନମତବାଦ ଠାରୁ ବ୍ରାହ୍ମଣ୍ୟବାଦ ବେଳେବେଳେ ସମ୍ପୂର୍ଣ୍ଣ ପୃଥକ ହୋଇଥିବାବେଳେ ତା' ମଧ୍ୟରେ ଆର୍ଯ୍ୟସମାଜ ଏବଂ ସନାତନଧର୍ମର ପାର୍ଥକ୍ୟ ଦେଖିବାକୁ ମିଳେ । ଅତୀତ ଯୁଗର ଆଉ ଏକ ସ୍ୱତନ୍ତ୍ର ଚିନ୍ତାଶୀଳ ଦାର୍ଶନିକ ହେଉଛନ୍ତି ଚାର୍ବାକ । ପ୍ରାଚୀନ କାଳରେ ସେ ଈଶ୍ୱରଙ୍କ ଆଧିପତ୍ୟ (ପ୍ରଭୁତ୍ୱ) କୁ ଅସ୍ୱୀକାର କରି ଆହ୍ୱାନ ଦେଇଥିଲେ । ମୌଳିକ ପ୍ରଶ୍ନରେ ଏହି ମତବାଦୀମାନେ ପରସ୍ପରଠାରୁ ପୃଥକ୍ ଥିଲେ ଏବଂ ପ୍ରତ୍ୟେକ ବିଚାର କରୁଥିଲେ ଯେ ଏକମାତ୍ର ତାଙ୍କ ମତ ଯଥାର୍ଥ ଓ ସତ୍ୟ । ଏହିଠାରେ ହିଁ ଦୁର୍ଭାଗ୍ୟ ନିହିତ । ଆନୁଭବିକ

ପରୀକ୍ଷଣ ଓ ପୂର୍ବାଚାର୍ଯ୍ୟମାନଙ୍କ ପ୍ରକାଶିତ ତଥ୍ୟକୁ ଆଧାର ଭାବରେ ଗ୍ରହଣ କରି ଅଜ୍ଞାନ ବିରୁଦ୍ଧରେ ଆମ ଭବିଷ୍ୟତ ସଂଗ୍ରାମ ଚଳାଇ ଏହି ରହସ୍ୟମୟ ସମସ୍ୟାର ସମାଧାନ କରିବା ପରିବର୍ତ୍ତେ ଆଳସ୍ୟ ପରାୟଣ ହୋଇ ବିଶ୍ୱାସ ଲାଗି ଆମେ କୋଳାହଳ କରି ଚାଲିଛୁ, ଏବଂ ଦୃଢ଼, ଅଟଳ ନିଜନିଜ ବିଶ୍ୱାସକୁ ସମ୍ବଳ କରି ଅପରାଧୀ ହୋଇଛୁ; ମାନବର ପ୍ରଗତି ପଥକୁ ରୁଦ୍ଧ କରି ଦେଇଛୁ ।

ଯେ କେହି ପ୍ରଗତି ପଥରେ ଅଗ୍ରସର ହେଲାବେଳେ ପ୍ରାଚୀନ ମତବାଦର ପ୍ରତ୍ୟେକ ବିଷୟକୁ ସମାଲୋଚନା କରି, ଅବିଶ୍ୱାସ କରି, ରଣାହ୍ୱାନ ଜଣାଇବାକୁ ପଡ଼ିଥାଏ । ପ୍ରଚଳିତ ବିଶ୍ୱାସର ପ୍ରତ୍ୟେକ ବିଷୟକୁ ଟିକିନିଖି କରି ସେ ବିଚାର କରେ । ଯଦି ଯଥେଷ୍ଟ ବିଚାର ପରେ କୌଣସି ମୀମାଂସା ବା ଦର୍ଶନରେ ସେ ଉପନୀତ ହୋଇଥାଏ, ତାହାର ସିଦ୍ଧାନ୍ତ ସ୍ୱାଗତଯୋଗ୍ୟ ଅଟେ । ତାହାଙ୍କର ବିଚାର ଶୈଳୀ ପ୍ରମାଦପୂର୍ଣ୍ଣ, ଭ୍ରାନ୍ତ, ପଥଚ୍ୟୁତ ବେଳେବେଳେ ଦୋଷଯୁକ୍ତ ହୋଇଥାଇପାରେ । ତଥାପି ସେ ନିଜକୁ ସୁଧାରି ନେଇପାରିବେ, କାରଣ, ଯୁକ୍ତି ହେଉଛି ତାଙ୍କ ଜୀବନର ଦିଗ୍‌ଦର୍ଶକ ତାରା । କିନ୍ତୁ କେବଳ ବିଶ୍ୱାସ ଓ ଅନ୍ଧବିଶ୍ୱାସ ହେଉଛି ବିପଦ୍‌ଜନକ । ଏହା ବୁଦ୍ଧିମାନ୍ଦ୍ୟର କାରଣ ହୁଏ, ଏବଂ ବ୍ୟକ୍ତିକୁ ସେ ପ୍ରତିକ୍ରିୟାଶୀଳ କରିଦିଏ । ଯେ ନିଜକୁ ବାସ୍ତବବାଦୀ ବୋଲି ଘୋଷଣା କରୁଛି, ସେ ସମସ୍ତ ପ୍ରାଚୀନ ବିଶ୍ୱାସମାନଙ୍କୁ ପ୍ରତିସ୍ପର୍ଦ୍ଧା ଜଣାଇବାକୁ ବାଧ୍ୟ ଅଟେ । ଯଦି ସେ ସବୁ ବିଶ୍ୱାସ ଯୁକ୍ତିର ଆଘାତ ସହ୍ୟ କରିପାରେ ନାହିଁ, ତାହା ଭୂଲୁଣ୍ଠିତ ହୋଇଯାଏ ।

ତେଣୁ ଯୁକ୍ତିନିଷ୍ଠ ଚିନ୍ତକର ପ୍ରଥମ କର୍ମ ହେଉଛି, ସମସ୍ତ ବିଶ୍ୱାସକୁ ଚୂର୍ଣ୍ଣୀଭୂତ କରି ଏକ ନବୀନ ଦର୍ଶନର ନିର୍ମାଣ ଲାଗି ଭୂମି ପ୍ରସ୍ତୁତ କରିବା । ତାହା ହେଉଛି ନକରାତ୍ମକ ପକ୍ଷ । ତା'ପରେ ସକରାତ୍ମକ କର୍ମ ଆରମ୍ଭ ହେଲାବେଳେ, ବେଳେବେଳେ ପୁର୍ନନିର୍ମାଣ ନିମିତ୍ତ ପ୍ରାଚୀନ ବିଶ୍ୱାସରୁ କିଛି କିଛି ଉପାଦାନ ସଂଗ୍ରହ କରାଯାଇପାରେ । ପ୍ରଥମରୁ ଏ ବିଷୟରେ ମୁଁ ଏତିକି କହିପାରେ ଯେ ମୁଁ ଏ ବିଷୟରେ ବିଶେଷ କିଛି ଅଧ୍ୟୟନ କରିପାରି ନାହିଁ । ପ୍ରାଚ୍ୟଦର୍ଶନ ଅଧ୍ୟୟନ କରିବା ପାଇଁ ମୋର ପ୍ରବଳ ଆକାଂକ୍ଷା ଥିଲା, କିନ୍ତୁ ତାହା ଲାଗି ମୋତେ ସୁଯୋଗ ଓ ସୁବିଧା ମିଳି ନାହିଁ । କିନ୍ତୁ ନକରାତ୍ମକ ଅଧ୍ୟୟନ ପକ୍ଷର ଆଲୋଚନା କଲାବେଳେ ମୋର ଦୃଢ଼ ପ୍ରତୀତି ରହିଛି ଯେ, ବିଶ୍ୱକୁ ପରିଚାଳିତ ଓ ନିୟନ୍ତ୍ରିତ କରୁଥିବା ଚେତନ ପରାମସତ୍ତାର ଅସ୍ତିତ୍ୱ ନାହିଁ । ଆମ୍ଭେମାନେ ପ୍ରକୃତିରେ ବିଶ୍ୱାସ କରୁ ଏବଂ ପ୍ରଗତିଶୀଳ ଭାବରେ ମନୁଷ୍ୟ ପ୍ରକୃତି ଉପରେ ନିଜ ପ୍ରଭୁତ୍ୱ ବିସ୍ତାର କରିଚାଲିଛି; ଏହା ମଧ୍ୟ ବିଶ୍ୱାସ କରୁ । ଏହାର ପୃଷ୍ଠଭୂମିରେ ପରିଚାଳନା କରିବା ପାଇଁ କୌଣସି ଚେତନ ଶକ୍ତିର ଅସ୍ତିତ୍ୱ ନାହିଁ । ଏହାହିଁ ହେଉଛି ଆମର ଦର୍ଶନ ।

ନକରାତ୍ମକ ପକ୍ଷରୁ ''ବିଶ୍ୱାସକାରୀ' ମାନଙ୍କୁ ଆମ୍ଭେ କିଛି ପ୍ରଶ୍ନ ପଚାରିବାକୁ ଚାହୁଁ ।

(୧) ଯଦି ଆପଣ ବିଶ୍ୱାସ କରୁଥାନ୍ତି ଯେ ଜଣେ ସର୍ବଶକ୍ତିମାନ, ସର୍ବତ୍ର ବିରାଜିତ,

ସର୍ବଜ୍ଞ ଈଶ୍ୱର ଅଛନ୍ତି ଓ ସେ ଏହି ପୃଥିବୀ ଓ ସଂସାରକୁ ସୃଷ୍ଟି କରିଅଛନ୍ତି, ଦୟାକରି ମୋତେ କୁହନ୍ତୁ, ସେ କାହିଁକି ଏହାକୁ ସୃଷ୍ଟି କରିଅଛନ୍ତି ? ଦୁଃଖ ଯନ୍ତ୍ରଣା ପୂର୍ଣ୍ଣ ଏହି ସଂସାର ହେଉଛି ଯଥାର୍ଥରେ ଅନେକ ଦୁଃଖାନ୍ତକ ଘଟଣାର ସଂଯୋଗରେ ନିର୍ମିତ ଏଭଳି ଏକ ବ୍ୟବସ୍ଥା, ଯହିଁରେ ଜଣେ ହେଲେ କେହି ପୂର୍ଣ୍ଣତୟା ସନ୍ତୁଷ୍ଟ ହୋଇପାରିବ କି ?

ପ୍ରାର୍ଥନା କରୁଛି, ଏହା ତାଙ୍କର ବିଧାନ ବୋଲି କହନ୍ତୁ ନାହିଁ । ସେ ଯଦି କୌଣସି ବିଧାନ ଦ୍ୱାରା ବନ୍ଦୀ, ତେବେ ସେ ସର୍ବଶକ୍ତିମାନ ହେବେ କିପରି ? ସେ ଆମ୍ଭମାନଙ୍କ ପରି ଆଉ ଜଣେ ଦାସ । ଦୟାକରି କହନ୍ତୁ ନାହିଁ ଯେ ଏହା ତାଙ୍କର ଲୀଳା । ନିରୋ ରୋମକୁ ଜାଳିଦେଲେ । ସେ ପରିସୀମୀତ କେତେକ ବ୍ୟକ୍ତିଙ୍କୁ ହତ୍ୟା କଲେ, ସେ ଅଳ୍ପ କେତେକ ଦୁଃଖାନ୍ତକ ଘଟଣା ଘଟାଇଲେ; ସେ ତାହା କରିଥିଲେ ନିଜର ସୁଖାନୁଭୂତି ପାଇଁ । ଚିନ୍ତା କରନ୍ତୁ, ଇତିହାସରେ ତାଙ୍କ ସ୍ଥାନ କଅଣ ? କେଉଁ ନାମରେ ଐତିହାସିକମାନେ ତାଙ୍କୁ ଅଭିହିତ କରାଇଛନ୍ତି ? ସକଳ ବିଷାକ୍ତ, ବିଷଦିଗ୍ଧ ବିଶେଷଣ ତାଙ୍କ ଉପରେ ବୃଷ୍ଟି ହୋଇଛି । ପୃଷ୍ଠାପୃଷ୍ଠା ବ୍ୟାପି ଭର୍ତ୍ସନା, ନିନ୍ଦା ଓ କଟୂକ୍ତି ଇତିହାସକୁ କାଳିମାମୟ କରିଦେଇଛି । ଅତ୍ୟାଚାରୀ, ହୃଦୟହୀନ ନିରୋଙ୍କ ପ୍ରତି ଇତିହାସର ଏ ମନ୍ତବ୍ୟ । ଜଣେ ଚେଙ୍ଗିଜ୍ ଖାଁ କେତେ ସହସ୍ର ଜୀବନକୁ ନିଜ ସୁଖ ଲାଗି ବଳି ଦେଇଛି, ଆମେ ସେ ନାମ ଉଚ୍ଚାରଣ କରିବାକୁ ଘୃଣା କରୁଥାଉଁ । ତା'ହେଲେ ଆପଣ କିପରି ଆପଣଙ୍କ ସର୍ବଶକ୍ତିମାନ ଶାଶ୍ୱତ ନିରୋଙ୍କ କର୍ମକୁ ସମର୍ଥନ କରିପାରିବେ ? ସେ ତ ଏବେ ମଧ୍ୟ ସଂଖ୍ୟାତୀତ ଦୁଃଖାନ୍ତକ ଘଟଣା ପ୍ରତିଦିନ, ପ୍ରତିଘଣ୍ଟା ଓ ପ୍ରତିମିନିଟ୍‌ରେ ଘଟାଉଛନ୍ତି ? ଆପଣ କିପରି ଚିନ୍ତା କରିପାରୁଛନ୍ତି ଯେ ପ୍ରତି ମୁହୂର୍ତ୍ତରେ ଚେଙ୍ଗିଜ୍‌ଙ୍କଠାରୁ ବଳି ଦୁଷ୍କର୍ମ କରୁଥିବା ସର୍ବଶକ୍ତିମାନଙ୍କୁ ଆପଣ ସମର୍ଥନ କରିପାରିବେ ? ମୁଁ କହୁଛି, ସେ କାହିଁକି ଏହି ଯଥାର୍ଥ ନର୍କରୂପ ସଂସାରକୁ ସୃଷ୍ଟିକଲେ ଯହିଁରେ ନିରନ୍ତର ତିକ୍ତ ଅଶାନ୍ତି ଅସ୍ଥିରତା ଲାଗି ରହିଛି ? ସେ କାହିଁକି ମନୁଷ୍ୟକୁ ସୃଷ୍ଟି କଲେ, ଯେତେବେଳେ ତାକୁ ସୃଷ୍ଟି ନ କରିବା କ୍ଷମତା ତାଙ୍କର ଥିଲା, ଏ ସବୁ ପାଇଁ କି ଔଚିତ୍ୟ ଅଛି । ଆପଣ କ'ଣ କହିଛନ୍ତି ଯେ ଏହାପରେ ନିରୀହ ଦୁଃଖଭୋଗକାରୀମାନଙ୍କୁ ପୁରସ୍କାର ମିଳିବ ଓ ଦୁଷ୍କର୍ମକାରୀମାନଙ୍କୁ ଶାସ୍ତି ମିଳିବ ? ଆଚ୍ଛା, ଆଚ୍ଛା, ଯେଉଁ ବ୍ୟକ୍ତି ଆପଣଙ୍କ ଶରୀରକୁ କ୍ଷତାକ୍ତ କରିଛି ଆପଣ କିପରି ବିଶ୍ୱାସ କରିବେ ଯେ ସେ ଏହାପରେ ଆପଣଙ୍କ ଦେହରେ କୋମଳ ଓ ଶାନ୍ତିପ୍ରଦ ପ୍ରଲେପ ବୋଳିଦେବେ ? ଗ୍ଲାଡ଼ିଏଟର ସଂସ୍ଥାର ସମର୍ଥକ ଓ ଆୟୋଜକମାନେ ପ୍ରଥମେ ଅର୍ଦ୍ଧକ୍ଷୁଧିତ ସିଂହ ମୁଖକୁ ମଣିଷଙ୍କୁ ଫିଙ୍ଗି ଦେଉଥିଲେ ଯଦି ସେମାନେ ବଞ୍ଚି ଯାଉଥିଲେ କିମ୍ବା ସେହି ନିଶ୍ଚିତ ମୃତ୍ୟୁମୁଖରୁ ଖସି ଆସୁଥିଲେ, ତାଙ୍କୁ ଯତ୍ନର ସହିତ ହେପାଜତ୍ କରୁଥିଲେ । ଏ କର୍ମକୁ ଆପଣ କିପରି ସାର୍ଥକ ବୋଲି କହିପାରିବେ ? ସେଥିପାଇଁ ମୁଁ ପଚାରୁଛି, ''କାହିଁକି ସେହି ଚେତନ ପରମ ତତ୍ତ୍ୱ ଏହି ସଂସାର ଓ ତହିଁରେ ମନୁଷ୍ୟକୁ ସୃଷ୍ଟି କରି ଅଛନ୍ତି ? ସୁଖ ପାଇବା ପାଇଁ ? ତା'ହେଲେ ନିରୋ ଓ ତାଙ୍କ ମଧ୍ୟରେ ପ୍ରଭେଦ କଅଣ ?''

ହେ, ମୁସଲମାନ ଓ ଖ୍ରୀଷ୍ଟିୟାନ୍‌ମାନେ : ହିନ୍ଦୁଦର୍ଶନ ଆଉ ଏକ ଯୁକ୍ତି ଉପସ୍ଥାପନ କରିବାକୁ ଅପେକ୍ଷା କରୁଛି । ମୁଁ କିନ୍ତୁ ତୁମ୍ଭଙ୍କୁ ପଚାରୁଛି ଉପର୍ଯ୍ୟୁକ୍ତ ପ୍ରଶ୍ନର ଉତ୍ତର କ'ଣ ? ତୁମେ ପୂର୍ବଜନ୍ମରେ ବିଶ୍ୱାସ କର ନାହିଁ । ହିନ୍ଦୁଙ୍କ ପରି ତୁମେ ଯୁକ୍ତି ବାଢ଼ିପାରିବ ନାହିଁ ଯେ ପୂର୍ବଜନ୍ମର ଦୁଷ୍କୃତରୁ ଆପାତ ନିରୀହ ବ୍ୟକ୍ତିମାନେ ଦୁଃଖଦୁର୍ଦ୍ଦଶା ଭୋଗ କରୁଅଛନ୍ତି । ମୁଁ ତୁମ୍ଭଙ୍କୁ ପଚାରୁଛି, ସର୍ବଶକ୍ତିମାନ୍ ଶବ୍ଦ ଦ୍ୱାରା ଏ ସଂସାରକୁ ସୃଷ୍ଟି କରିବା ପାଇଁ କାହିଁକି ଛଅଦିନ ପରିଶ୍ରମ କଲେ ଏବଂ ପ୍ରତିଦିନ କହୁଥିଲେ ''ସବୁ ଠିକ୍ ଅଛି ।'' ଆଜି ତାଙ୍କୁ ଡାକନ୍ତୁ । ଅତୀତର ଇତିହାସ ତାଙ୍କୁ ଦେଖାନ୍ତୁ । ବର୍ତ୍ତମାନର ପରିସ୍ଥିତି ସମ୍ବନ୍ଧରେ ତାଙ୍କୁ ଅଧ୍ୟୟନ କରାନ୍ତୁ । ଆମେ ଦେଖିବା ସେ ଯଦି ସାହସର ସହିତ କହିବେ ଯେ ''ସବୁ ଠିକ୍ ଅଛି ।''

କାରାଗାରର ଅନ୍ଧକୂପମାନଙ୍କଠାରୁ, ବସ୍ତି–ବାସିନ୍ଦା ଭାବରେ ଭୋକରେ ଛଟପଟ ହେଉଥିବା ଲକ୍ଷଲକ୍ଷ ଝାଟିମାଟି ଘରବାସୀମାନଙ୍କ ପର୍ଯ୍ୟନ୍ତ ଏବଂ ପୁଞ୍ଜିବାଦୀ ପିଶାଚମାନଙ୍କ ଦ୍ୱାରା ନିଜ ରକ୍ତ ଶୋଷଣ ହେଉଥିବାବେଳେ ନିର୍ବେଦ ଓ ଉଦାସ ଭାବରେ ଚାହିଁ ରହିଥିବା ଶୋଷିତ ଶ୍ରମିକମାନଙ୍କୁ ଦେଖି ତଥା ମାନବ ଶକ୍ତିର ବୃଥା ଅପଚୟ ଘଟୁଥିବାବେଳେ ସର୍ବନିମ୍ନ ସାଧାରଣ ଜ୍ଞାନ ଥିବା ବ୍ୟକ୍ତିର ଭୟଜନିତ ହୃତ୍‌କମ୍ପ ଜାତ ହେବା ସ୍ୱାଭାବିକ । ଉତ୍ପନ୍ନ ବସ୍ତୁର ବଳକା ଅଂଶକୁ ଦରିଦ୍ର ଉତ୍ପାଦକମାନଙ୍କ ମଧ୍ୟରେ ବାଣ୍ଟି ନଦେଇ ସମୁଦ୍ରରେ ଫୋପାଡ଼ି ଦେବାର ମନୋବୃତ୍ତି ଏବଂ ମନୁଷ୍ୟ ଅସ୍ଥିରେ ନିର୍ମିତ ଭିତ୍ତି ଉପରେ ଠିଆ ହୋଇଥିବା ରାଜା ମହାରାଜାଙ୍କ ମହଲ..., ସେ ସର୍ବଶକ୍ତିମାନ ଆସି ଦେଖନ୍ତୁ ଏବଂ କହନ୍ତୁ ''ସବୁ ଠିକ୍ ଅଛି ।'' କାହିଁକି ଓ କଅଣ ପାଇଁ ? ତାହା ହେଉଛି ମୋର ପ୍ରଶ୍ନ । ତୁମେତ ନୀରବ ରହୁଛ । ତାହେଲେ ମୁଁ ଆଗକୁ ଯାଇ ପଚାରୁଛି ହେ ହିନ୍ଦୁମାନେ ! ତୁମେ କହୁଛ ଯେ ବର୍ତ୍ତମାନର ଏହି ଦୁଃଖୀଜନମାନେ ପୂର୍ବଜନ୍ମରେ ପାପାଚାରୀ ଥିଲେ । ଉତ୍ତମ । ତୁମେ କହୁଛ ଯେ ଏହି ସମୟର ଅତ୍ୟାଚାରୀମାନେ ପୂର୍ବଜନ୍ମରେ ସାଧୁସନ୍ଥ ଥିବାରୁ ଏ ଜନ୍ମରେ କ୍ଷମତା ଉପଭୋଗ କରୁଛନ୍ତି । ମୁଁ ସ୍ୱୀକାର କରୁଛି ଯେ ତୁମ ପୂର୍ବପୁରୁଷମାନେ ଅତ୍ୟନ୍ତ ଚତୁର ବ୍ୟକ୍ତି ଥିଲେ । ସେମାନେ ଏପରି ମୀମାଂସାମାନ ପାଇବାକୁ ଚେଷ୍ଟା କରିଥିଲେ ଯେପରି ସକଳ ଯୁକ୍ତିସିଦ୍ଧ ଅବିଶ୍ୱାସ ଓ ତା' ସହିତ ଯୁକ୍ତିକୁ ମଧ୍ୟ ହାତୁଡ଼ି ମାଡ଼ରେ ଚୂର୍ଣ୍ଣ କରିଦିଆଯାଇ ପାରିବ । ଚାଲନ୍ତୁ ବିଶ୍ଳେଷଣ କରିବା ଯେ ସେମାନଙ୍କ ଯୁକ୍ତି କେତେଦୂର ସାର୍ଥକ ଓ ସବଳ ।

ଆଇନ ଶାସ୍ତ୍ର ଅଭିଜ୍ଞ ବିଶିଷ୍ଟ ବିଚାରକମାନଙ୍କର ମତ ହେଉଛି ଯେ ଦୋଷ କରିଥିବା ବ୍ୟକ୍ତି ପ୍ରତି ଦଣ୍ଡବିଧାନ ଯଥାର୍ଥ କେବଳ ତିନି ବା ଚାରିଟି ଲକ୍ଷ୍ୟ ପୂରଣ ପାଇଁ କରାଯାଇଥାଏ । ତାହା ହେଉଛି, ପ୍ରତିକାରାର୍ଥକ ଦଣ୍ଡବିଧାନ, ସୁଧାରାର୍ଥକ ଦଣ୍ଡବିଧାନ, ଏବଂ ନିବାରଣାର୍ଥକ ଦଣ୍ଡବିଧାନ । ଅଧୁନା ସମସ୍ତ ଅଗ୍ରଗାମୀ ଚିନ୍ତାଶୀଳ ବ୍ୟକ୍ତିମାନେ ପ୍ରତିକାରାର୍ଥକ ଦଣ୍ଡବିଧାନକୁ ନିନ୍ଦା କରିଅଛନ୍ତି । ନିବାରଣାର୍ଥକ ଦଣ୍ଡବିଧାନ ମଧ୍ୟ ସେହି ଦଶା ପ୍ରାପ୍ତ ହୋଇଛି । ସୁଧାରାର୍ଥକ

ଦଣ୍ଡବିଧାନ ହେଉଛି ଏକମାତ୍ର ବିଧାନ ଯାହା ମାନବର ପ୍ରଗତି ଲାଗି ମୌଳିକ ଓ ଅପରିହାର୍ଯ୍ୟ । ଅପରାଧୀଙ୍କୁ ଜଣେ ଦକ୍ଷ ଓ ଶାନ୍ତିପ୍ରିୟ ନାଗରୀକ ଭାବରେ ସମାଜ ମଧ୍ୟକୁ ଫେରାଇ ଆଣିବା ହେଉଛି ଏହାର ଲକ୍ଷ୍ୟ । ଯଦି ଧରିନିଆଯାଏ ଯେ ମନୁଷ୍ୟମାନେ ଅପରାଧୀ, ତେବେ ସେମାନଙ୍କ ପ୍ରତି ଈଶ୍ୱରଙ୍କ ଦଣ୍ଡବିଧାନ କେଉଁ ପ୍ରକାରର ଦଣ୍ଡବିଧାନ ତାହା ବିଚାର କରିବାକୁ ହେବ । ତୁମ୍ଭେମାନେ କହୁଛ ଈଶ୍ୱର ସେମାନଙ୍କୁ ଗାଈ, ବିଲେଇ, ଗଛ, ଗୁଳ୍ମ କିମ୍ବା ପଶୁ ଭାବରେ ଜନ୍ମ ନେବାକୁ ପଠାନ୍ତି । ତୁମେ ଗଣନା କରି ରଖିଛ ଯେ ଏହି ଦଣ୍ଡବିଧାନର ସଂଖ୍ୟା ହେଉଛି ୮୪ ଲକ୍ଷ (ଚଉରାଶି ଲକ୍ଷ) । ମୁଁ ତୁମ୍ଭଙ୍କୁ ପଚାରୁଛି ମନୁଷ୍ୟ ଉପରେ ଏହି ଦଣ୍ଡବିଧାନର ସୁଧାରିବା କ୍ରିୟା କେତେ ? ତୁମକୁ ଭେଟିଥିବା କେତେ ସଂଖ୍ୟକ ଲୋକ ତୁମକୁ କହିଛନ୍ତି ଯେ ସେମାନେ ପାପ କରିଥିବା ହେତୁ ପୂର୍ବଜନ୍ମରେ ଗଧ ହୋଇ ଜନ୍ମ ହୋଇଥିଲେ ? କେହି ନୁହଁ । ତୁମ ପୁରାଣକୁ ଉଦ୍ଧୃତ କର ନାହିଁ । ତୁମ ପୌରାଣିକ କଥାକୁ ସ୍ପର୍ଶ କରିବା ପାଇଁ ମୋର ଅବକାଶ ନାହିଁ । ଏହାଛଡ଼ା ତୁମେ ଜାଣିଛ କି ସଂସାରରେ ଦରିଦ୍ର ହେବା ହେଉଛି ସବୁଠାରୁ ବଡ଼ ପାପ । ଦାରିଦ୍ର୍ୟ ହେଉଛି ପାପ, ତାହା ମଧ୍ୟ ଦଣ୍ଡ । ମୁଁ ତୁମକୁ ପଚାରୁଛି ତୁମେ ଜଣେ ଦଣ୍ଡବିଧିବିତ୍, ଜଣେ ଆଇନଜ୍ଞ, ଜଣେ ବିଧାୟକଙ୍କୁ କିପରି ପ୍ରଶଂସା କରିବ, ଯେ ଏଭଳି ବ୍ୟବସ୍ଥା କରିଥିବେ, ଯାହା ଅନିବାର୍ଯ୍ୟ ଭାବରେ ମନୁଷ୍ୟକୁ ବାଧ କରିବ ଅଧିକରୁ ଅଧିକ ଅପରାଧ କରିବା ପାଇଁ ? ତୁମ ଈଶ୍ୱର କଅଣ ଏ କଥା ଭାବି ନ ଥିଲେ କିମ୍ବା ସେ ମଧ୍ୟ ଏ ସବୁ ଅନୁଭବରୁ ଶିକ୍ଷା କରିବେ । ତାଙ୍କର ଏହି ଶିକ୍ଷା ଲାଭ ଲାଗି ମନୁଷ୍ୟ ଜାତିକୁ ଅକଥନୀୟ ଦୁଃଖ ଦୁର୍ଦ୍ଦଶା ଭୋଗ କରିବାକୁ ହେଉଛି । ଥରେ ଭାବନ୍ତୁ, ଗୋଟିଏ ଦରିଦ୍ର ଓ ନିରକ୍ଷର ଚମାର ବା ଝାଡୁଦାର ଘରେ ଜନ୍ମ ହୋଇଥିବା ମଣିଷର ଭାଗ୍ୟ କଅଣ ହେବ ? ସେ ଦରିଦ୍ର, ତେଣୁ ସେ ପାଠ ପଢ଼ିପାରିବ ନାହିଁ । ଯେଉଁମାନେ ଉଚ୍ଚ କୂଳରେ ଜନ୍ମ ହୋଇଥିବେ ସେମାନେ ତାକୁ ଘୃଣା ଚକ୍ଷୁରେ ଦେଖିବେ ଓ ପରିତ୍ୟାଗ କରିବେ । ସେମାନେ ନିଜକୁ ତାହାଠାରୁ ଉଚ୍ଚ ବୋଲି ବିଚାର କରିବେ । ସେ ଲୋକର ଅଜ୍ଞାନ, ତା ଦାରିଦ୍ର୍ୟ, ଏବଂ ତାକୁ ଯେଉଁ ପ୍ରକାର ବ୍ୟବହାର ପ୍ରଦର୍ଶନ କରାଯାଉଛି, ତାହା ତା' ହୃଦୟକୁ ସମାଜ ପ୍ରତି କଠୋର କରିଦେବ । ଧରନ୍ତୁ ସେ ଗୋଟିଏ ପାପ କାର୍ଯ୍ୟ କଲା, କିଏ ତାହାର ପରିଣତି ଭୋଗ କରିବ ? ଈଶ୍ୱର, ସେ ନିଜେ, କିମ୍ବା ସମାଜର ବଡ଼ପଣ୍ଡା ପଣ୍ଡିତ ବ୍ୟକ୍ତିଗଣ ? ଅହଂକାରୀ ଓ ସ୍ୱାର୍ଥପର ବ୍ରାହ୍ମଣଙ୍କ ଦ୍ୱାରା ଜାଣିଶୁଣି ତାହାକୁ ଅଜ୍ଞାନୀ କରି ରଖାଯାଇଛି । ତୁମ୍ଭର ପବିତ୍ର ଗ୍ରନ୍ଥ ବେଦର କେଇପଦ ଶୁଣିନେଲେ ବୋଲି ସେମାନଙ୍କ କାନରେ ତରଳ ଶିଶା ଭର୍ତ୍ତି କରିବାର ବ୍ୟବସ୍ଥା କରାଯାଇଛି । ଯଦି ସେହି ଅପାଠୁଆ ଦରିଦ୍ର ବ୍ୟକ୍ତି କିଛି ଅପରାଧ କରନ୍ତି, କିଏ ତାଙ୍କ ପାଇଁ ଦାୟୀ ହେବ ? ପ୍ରିୟ ବନ୍ଧୁଗଣ : ଏହି ମୀମାଂସା ସବୁ ସୁବିଧାଭୋଗୀ ଲୋକମାନଙ୍କର ସୃଷ୍ଟି । ଏହି ମୀମାଂସା ମାନଙ୍କ ଦ୍ୱାରା ସେମାନେ ତାଙ୍କର କ୍ଷମତା, ଧନ ଏବଂ ପ୍ରାଧାନ୍ୟକୁ ସାବ୍ୟସ୍ତ କରିଛନ୍ତି । ହଁ, ବୋଧହୁଏ ଅପଟନ ସିନ୍‌କ୍ଲେୟାର କେଉଁଠି

ଲେଖିଥିଲେ, ଯେ କୌଣସି ଲୋକକୁ ଅମୃତତ୍ୱ ରେ ବିଶ୍ୱାସୀ କରାଇଦିଅ ଓ ତାହାର ସକଳ ଧନ ସମ୍ପତ୍ତି ଅପହରଣ କର । ସେ ବରଂ ତହିଁରେ ଆପଣଙ୍କ ସହିତ ଅମ୍ଲାନ ମୁଖରେ ସହଯୋଗ କରିବ । ଧର୍ମ ପ୍ରଚାର କରୁଥିବା ବ୍ୟକ୍ତିଙ୍କ ସହିତ କ୍ଷମତାପନ୍ନ ବ୍ୟକ୍ତିମାନଙ୍କ ମିଳିତ ଭାବ ଏହି ସବୁ ଜେଲ୍, ଫାଶି, ବେଡ଼ି ଏବଂ ଏହି ମୀମାଂସାମାନ ଆଣି ଥୋଇଛନ୍ତି ।

ମୁଁ ପଚାରୁଛି, ଆପଣଙ୍କର ସର୍ବଶକ୍ତିମାନ ଈଶ୍ୱର କଅଣ ପାଇଁ ପ୍ରତ୍ୟେକ ବ୍ୟକ୍ତିଙ୍କୁ ପାପ ବା ଅପରାଧ ଆରମ୍ଭ କଲାବେଳେ ବନ୍ଦ କରାଇ ଦେଉ ନାହାନ୍ତି ? ସେ ଏହା ସହଜରେ କରିପାରନ୍ତେ । ଯୁଦ୍ଧଖୋର ବ୍ୟକ୍ତିମାନଙ୍କୁ ହତ୍ୟାକରି, କିମ୍ବା ତାଙ୍କ ଭିତରେ ଥିବା ଯୁଦ୍ଧ ବାସନାକୁ ନାଶ କରି ମାନବ ଜାତି ମୁଣ୍ଡରେ ଲଦି ଦିଆଯାଉଥିବା ମହାସମର ଓ ଯୁଦ୍ଧ ବିଭୀଷିକାମାନଙ୍କରୁ ତ୍ରାହି କରିଦେଇପାରନ୍ତେ ! କାହିଁକି ସେ ବ୍ରିଟିଶ ଲୋକମାନଙ୍କ ମନରେ ଭାରତର ମୁକ୍ତି ଲାଗି ସମ୍ବେଦନ ସୃଷ୍ଟି କରିପାରୁ ନାହାନ୍ତି ? କାହିଁକି ସେ ପୁଞ୍ଜିପତିମାନଙ୍କ ହୃଦୟରେ ପରୋପକାର ପ୍ରବୃତ୍ତି ଭରି ଦେଉନାହାନ୍ତି, ଯାହା ଫଳରେ ପୁଞ୍ଜିପତିମାନେ ବ୍ୟକ୍ତିଗତ ଧନାଧିକାର ତ୍ୟାଗ କରି ଏବଂ ଉତ୍ପାଦନ ସାଧନରେ ବ୍ୟକ୍ତିଗତ ଅଧିକାରରୁ ନିବର୍ତ୍ତି ଶ୍ରମିକ ସମାଜ ଏବଂ ସମଗ୍ର ମାନବ ସମାଜକୁ ପୁଞ୍ଜିବାଦ କବଳରୁ ମୁକ୍ତ କରିଦେଉନାହାନ୍ତି ? ସମାଜବାଦର ସିଦ୍ଧାନ୍ତର ବ୍ୟବହାରୋପଯୋଗିତା ବିଷୟରେ ଆପଣ ବିଚାର କରିବାକୁ ଚାହୁଁଛନ୍ତି ? ମୁଁ ଆପଣଙ୍କ ସର୍ବଶକ୍ତିମାନଙ୍କ ହାତରେ ତାହା କାର୍ଯ୍ୟକାରୀ କରିବା ଦାୟିତ୍ୱ ଅର୍ପଣ କରୁଛି । ଲୋକମାନେ ଜନହିତକର ସମାଜବାଦର ଉପକାରିତା ବୁଝୁଛନ୍ତି । ଏହାର ବ୍ୟବହାରିକ ପ୍ରାୟୋଗିକତା ବିଷୟରେ ସଂଶୟ ପୋଷଣ କରି ତାହାର ବିରୋଧୀ ବାହାନା କରୁଛନ୍ତି । ସର୍ବଶକ୍ତିମାନ୍ ଓହ୍ଲାଇ ଆସନ୍ତୁ ଏବଂ ହସ୍ତକ୍ଷେପ କରି ସମସ୍ତ ବ୍ୟବସ୍ଥାକୁ ସଜାଡ଼ି ଦିଅନ୍ତୁ । ଏବେ ଆଉ ଏଣୁତେଣୁ ଯୁକ୍ତିମାନ ଉପସ୍ଥାପନ କରନ୍ତୁ ନାହିଁ । ସେ ସବୁ ଅକାମୀ ହୋଇଗଲାଣି । ମୁଁ ତୁମ୍ଭକୁ କହିଦିଏ ଯେ ଈଶ୍ୱର ଚାହୁଁଛନ୍ତି ବୋଲି ବ୍ରିଟିଶ ସରକାର ଏଠାରେ ରାଜତ୍ୱ କରୁନାହିଁ; ସେମାନଙ୍କର ଶକ୍ତି କ୍ଷମତା ଅଛି ଓ ଆମେ ତାହାର ବିରୋଧ କରିବାକୁ ସାହସ କରିପାରୁ ନାହିଁ । ସେମାନେ ଈଶ୍ୱରଙ୍କ ସହାୟକତାରେ ଆମକୁ ଅଧୀନ କରି ରଖି ନାହାନ୍ତି; ଗୋଳାଗୁଳି, ବନ୍ଧୁକ, ବୋମା, ପୋଲିସ୍ ଏବଂ ସାମରିକ ବାହିନୀ ଏବଂ ସ୍ୱାଧୀନ ହେବା ପାଇଁ ଆମର ଅନିଚ୍ଛା ହେତୁ ସେମାନେ ସମାଜ ବିରୋଧରେ ଶୋଚନୀୟ ଘୋର ପାପ କରିବାରେ ସଫଳ ହୋଇଛନ୍ତି । ଗୋଟିଏ ଜାତି ଆଉ ଗୋଟିଏ ଜାତିକୁ ବଳାତ୍କାର କରି ଶୋଷଣ କରୁଛି । ଈଶ୍ୱର କାହାନ୍ତି ? ସେ କଅଣ କରୁଛନ୍ତି ? ମାନବ ଜାତିର ଏହି ଦୁଃଖକୁ କଅଣ ସେ ଉପଭୋଗ କରୁଛନ୍ତି ? ଗୋଟାଏ ନିରୋ, ଗୋଟାଏ ଚେଙ୍ଗିଜ୍, ତାହାର ପତନ ହେଉ ।

ଜଗତ କିପରି ସୃଷ୍ଟି ହେଲା ଓ ତହିଁରେ ମନୁଷ୍ୟ କିପରି ସୃଷ୍ଟି ହେଲା, ଏହା ବୁଝାଇବା ପାଇଁ ମୋତେ ପଚାରୁଛ କି ? ଠିକ୍ ଅଛି, ମୁଁ କହୁଛି– ଚାର୍ଲସ ଡାରଉଇନ୍ ଏ ବିଷୟରେ କିଛି ଆଲୋକପାତ କରିବାକୁ ପ୍ରୟାସ କରିଛନ୍ତି । ତାହାକୁ ପାଠ କରନ୍ତୁ ।

ସ୍ୱହମ୍ ସ୍ୱାମୀଙ୍କର ''ସାଧାରଣ ଜ୍ଞାନ'' ତାହା ତୁମ୍ଭ ପ୍ରଶ୍ନର କିଛି ଉତ୍ତର ଦେଇପାରିବ । ଏ ଜଗତ ହେଉଛି ପ୍ରକୃତିର ପ୍ରକାଶ । ବିଭିନ୍ନ ଉପାଦାନ ଆକସ୍ମିକ ସମ୍ମିଶ୍ରଣରେ ନେବୁଲା ରୂପରୁ ପୃଥିବୀ ସୃଷ୍ଟି ହେଲା ? ଏବଂ ଅନେକ କାଳ ପରେ ମନୁଷ୍ୟ ଉତ୍ପନ୍ନ ହେଲା । ଡାରଉଇନ୍‌ଙ୍କ ''ଅରିଜିନ୍ ଅଫ୍ ସ୍ପେସିଜ'' ଗ୍ରନ୍ଥ ଅଧ୍ୟୟନ କରନ୍ତୁ । ଯାହା ପରବର୍ତ୍ତୀ ଅଗ୍ରଗତି ହୋଇଛି, ତାହା ମନୁଷ୍ୟର ପ୍ରକୃତି ସହିତ ସଂଘର୍ଷରୁ ଏବଂ ପ୍ରକୃତିକୁ ପରାଭୂତ କରିବା ଉଦ୍ୟମରୁ ହୋଇଛି । ଏହି ଘଟଣାର ଏହା ହେଉଛି ସଂକ୍ଷିପ୍ତତମ ବିବରଣୀ ।

ତୁମ୍ଭର ଅନ୍ୟ ଯୁକ୍ତିଟି ହେଉଛି, କାହିଁକି ଜଣେ ପିଲା ଜନ୍ମ ଅନ୍ଧ କିମ୍ବା ଆଜନ୍ମରୁ ଛୋଟା ହୋଇ ଜନ୍ମ ନେଉଛି ? ତୁମ ମତରେ ତାହାର କାରଣ ହେଉଛି, ତାହାର ପୂର୍ବଜନ୍ମାର୍ଜିତ କର୍ମଫଳ । ଏହି ସମସ୍ୟାକୁ ପ୍ରାଣୀବିଜ୍ଞାନବିତ୍‌ମାନେ ଏକ ପ୍ରାଣୀବିଜ୍ଞାନଗତ ଘଟଣା ମାତ୍ର ବୋଲି ବୁଝାଇ ଦେଇଥାନ୍ତି । ସେମାନଙ୍କ ମତରେ ସେଥିପାଇଁ ସେ ପିଲାର ପିତାମାତା ଦାୟୀ; ସେମାନେ ଜାଣି ନ ଜାଣି ନିଜ କାରଣରୁ ହିଁ ପିଲାଟିର ଜନ୍ମ ପୂର୍ବ ଅଙ୍ଗହାନି ଘଟିଥାଏ ।

ଆଉ ଗୋଟିଏ ପ୍ରଶ୍ନ ତୁମେ ପଚାରିପାର, ଯଦିବା ସେ ପ୍ରଶ୍ନ ଏକ ବାଳୁତ ସୁଲଭ ପ୍ରଶ୍ନ । ଯଦି ଈଶ୍ୱର ନଥାନ୍ତେ, ଲୋକମାନେ ସେ ଅଛନ୍ତି ବୋଲି ବିଶ୍ୱାସ କରିଥାନ୍ତେ କିପରି ? ମୁଁ ସ୍ପଷ୍ଟ ଭାବରେ ଅଳ୍ପକେ ତାହାର ଉତ୍ତର ଦେଉଛି । ଲୋକମାନେ ଯେପରି ଭୂତପ୍ରେତରେ ଡାଆଣି, ଚିରଗୁଣୀରେ ବିଶ୍ୱାସ କରନ୍ତି । କିନ୍ତୁ ପାର୍ଥକ୍ୟ ଏତିକି ଯେ ଈଶ୍ୱର ବିଶ୍ୱାସ ପ୍ରାୟ ସାର୍ବଜନୀନ ଏବଂ ତାହା ପାଇଁ ଏକ ଉନ୍ନତ ଦର୍ଶନ ସୃଷ୍ଟି ହୋଇଅଛି । କେତେକ ମୌଳବାଦୀମାନଙ୍କ ପରି ମୁଁ କହିବି ନାହିଁ ଯେ ଜନ ସାଧାରଣଙ୍କୁ ନିଜ ଅଧୀନସ୍ଥ କରିବା ପାଇଁ ଏଭଳି ମତ ପ୍ରଚାର କରାଯାଇଛି ଓ ପରମ ସତ୍ତାକୁ ସ୍ୱୀକାର କରାଇ ନିଜର ଆଧିପତ୍ୟକୁ ଜାହିର କରାଯାଇଛି । ଅବଶ୍ୟ ସେମାନଙ୍କ ସହିତ ମୂଳତଃ ମୁଁ ଏକମତ ଯେ ସମସ୍ତ ଧର୍ମୀୟ ବିଶ୍ୱାସ, ମତ ଓ ଅନୁଷ୍ଠାନ ଅତ୍ୟାଚାରୀ ଶୋଷକମାନଙ୍କ ସପକ୍ଷରେ କାମ କରିଥାନ୍ତି । ରାଜାଙ୍କ ବିରୁଦ୍ଧରେ ବିଦ୍ରୋହ କରିବା ପାପ ବୋଲି ପ୍ରତ୍ୟେକ ଧର୍ମରେ କୁହାଯାଇଛି ।

ଈଶ୍ୱର ବିଶ୍ୱାସର ଉତ୍ପତ୍ତି ବିଷୟରେ ମୋର ନିଜ ମତ ହେଉଛି, ଯେ ମନୁଷ୍ୟ ଯେତେବେଳେ ନିଜର ଦୁର୍ବଳତା ଓ ସସୀମତା ବିଷୟରେ ସଚେତନ ହେଲା, ଈଶ୍ୱରଙ୍କ କାଳ୍ପନିକ ଅସ୍ତିତ୍ୱରେ ବିଶ୍ୱାସ କରି ଜୀବନରେ କଠୋର ପ୍ରତିକୂଳ ପରିସ୍ଥିତିକୁ ମୁକାବିଲା କରିବାକୁ ସାହସ ପାଇଲା, ଏବଂ ବିପଦରେ ପଡ଼ିଥିଲାବେଳେ ପୌରୁଷର ସହିତ ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ଅନୁପ୍ରେରଣା ଲାଭ କଲା । ନିଜେ ଧନସମ୍ପତ୍ତି ଓ ସମୃଦ୍ଧିରେ ଉନ୍ମତ୍ତ ହେବାବେଳେ ଆତ୍ମସଂଯମ କରିବାକୁ ଶିକ୍ଷା ପାଇଲା । ଈଶ୍ୱରଙ୍କ ବ୍ୟକ୍ତିଗତ ବିଧାନ ଏବଂ ପିତୃମାତୃତ୍ୱ ସୁଲଭ ଉଦାରତାକୁ କଳ୍ପନା କରି ବିଶେଷ ଭାବରେ ଚିତ୍ରଣ କରାଗଲା । ତାଙ୍କର ବ୍ୟକ୍ତିଗତ ବିଧାନ ଆଲୋଚନା କଲାବେଳେ ସେ ଗୋଟିଏ ଉଗ୍ର ପ୍ରତିଷେଧକ

ତତ୍ତ୍ୱ ଭାବରେ ଜଣାଯାଇଥାନ୍ତି । ତେଣୁ ସମାଜର ବିପଦ ଭାବରେ ଅବତୀର୍ଣ୍ଣ ହେବାକୁ ମଣିଷ ଶଙ୍କା କରିଥାଏ । ଈଶ୍ୱର ପୁଣି ପିତା, ମାତା, ଭଉଣୀ, ଭାଇ, ବନ୍ଧୁ ଓ ସହୃଦୟ-ସହାୟକ ଭାବରେ ଆଭାସନ୍ତି, ଯେତେବେଳେ ତାଙ୍କର ପିତୃ-ମାତୃ ସୁଲଭ ଉଦାରତା ଗୁଣର ବ୍ୟାଖ୍ୟା କରାଯାଇଥାଏ । ମନୁଷ୍ୟ ଯେତେବେଳେ ନିଜକୁ ପରିତ୍ୟକ୍ତ, ନିଃସଂଗ ଓ ନିଃସହାୟ ତଥା ସାଥିହରା ବୋଲି ମନେକରେ, ସେ ଈଶ୍ୱର ବିଶ୍ୱାସକୁ ଆଶ୍ରୟ କରି ନିଜକୁ ଆଉ ନିରାଶ୍ରୟ ବୋଲି ବୋଧ କରେ ନାହିଁ । ତାହାର ବିଚାରକୁ ଆସେ ଯେ ନିତ୍ୟ-ବନ୍ଧୁ ଭାବରେ ତାକୁ ସହାୟକ ହେବା ପାଇଁ ଜଣେ କେହି ଅଛି । ସେ ସର୍ବଶକ୍ତିମାନ ହୋଇଥିବାରୁ ତାଙ୍କ ପକ୍ଷରେ ଅସାଧ ହୋଇ କିଛି ନାହିଁ । ଈଶ୍ୱର ବିଶ୍ୱାସ ଯଥାର୍ଥରେ ଆଦିମ ଯୁଗରେ ସମାଜର ଉପକାର କରି ଆସିଥିଲା । ବିଷାଦ-କ୍ଲିଷ୍ଟ ମନୁଷ୍ୟର ସହାୟକ ଭାବରେ ଈଶ୍ୱରବିଶ୍ୱାସ କାର୍ଯ୍ୟ କରିଥାଏ ।

ପୁତ୍ତଳିକା ପୂଜା ଓ ଧର୍ମର ସଂକୀର୍ଣ୍ଣ ରୂପକୁ ସମାଜ ଯେପରି ସଫଳତା ସହିତ ବିରୋଧ କରିଆସିଥିଲା, ଈଶ୍ୱରବିଶ୍ୱାସକୁ ସେହିପରି ବିରୋଧ କରିବାକୁ ହେବ । ସେହିପରି ମନୁଷ୍ୟ ଯେତେବେଳେ ଜଣେ ବାସ୍ତବବାଦୀ ହୋଇ ନିଜ ଗୋଡ଼ରେ ଛିଡ଼ା ହେବାକୁ ଚେଷ୍ଟା କରିବ, ସେ ଈଶ୍ୱର ବିଶ୍ୱାସକୁ ତ୍ୟାଗ କରି ଯେଉଁ ପରିସ୍ଥିତିରେ ପଡ଼ିଥାଉ ପଛକେ ପୌରୁଷର ସହିତ ସମସ୍ତ ଦୁଃଖ କଷ୍ଟକୁ ମୁକାବିଲା କରିବ । ଯଥାର୍ଥତଃ ତାହାହିଁ ହେଉଛି ମୋର ଅବସ୍ଥା । ବନ୍ଧୁମାନେ ! ଏହା ମୋର ଔଦ୍ଧତ୍ୟ ନୁହେଁ; ମୋର ଚିନ୍ତାର ରୀତି ଓ ପଦ୍ଧତି ମୋତେ ନାସ୍ତିକ କରିଛି । ମୁଁ ଜାଣେ ନାହିଁ, ଈଶ୍ୱରବିଶ୍ୱାସ ଓ ଦୈନିକ ପ୍ରାର୍ଥନା, ଯାହାକୁ ମନୁଷ୍ୟ ପକ୍ଷରେ ନିତାନ୍ତ ସ୍ୱାର୍ଥପର ଓ ଅଧଃପତିତ କର୍ମ ବୋଲି ମନେକରେ, କେତେଦୂର ତାହା ମୋତେ ସହାୟକ ହେବ କିମ୍ୱା ମୋ ଅବସ୍ଥାକୁ ଅଧିକତର ନିମ୍ନସ୍ଥିତିକୁ ଘେନିଯିବ ! ମୁଁ ପଢ଼ିଛି ଯେ ନାସ୍ତିକମାନେ ସକଳ ଦୁଃଖକଷ୍ଟକୁ ସାହସର ସହିତ ସମ୍ମୁଖୀନ ହୋଇଛନ୍ତି, ତେଣୁ ମୁଁ ଶେଷ ପର୍ଯ୍ୟନ୍ତ ଉନ୍ନତଶିର ହୋଇ ଠିଆ ହେବାକୁ ଚେଷ୍ଟା କରୁଛି । ଏପରିକି ଫାଶି ପଟା ଉପରେ ମଧ୍ୟ ।

ଦେଖିବା କିପରି ମୁଁ ତା' କରିପାରୁଛି : ଜଣେ ବନ୍ଧୁ ମୋତେ ପ୍ରାର୍ଥନା କରିବାକୁ କହିଲେ । ମୋ ନାସ୍ତିକତା ବିଷୟ ଶୁଣିଲା ପରେ ସେ କହିଲେ, ''ତମ ଜୀବନର ଶେଷ ବେଳକୁ ତୁମେ ବିଶ୍ୱାସ କରିବ ।'' ମୁଁ କହିଲି, ନା ମହାଶୟ ! ତାହା ହେବ ନାହିଁ । ମୁଁ ଭାବିବି ସେ କାର୍ଯ୍ୟ ମୋ ପାଇଁ ଏକ ଅଧଃପତିତ ଓ ନୈତିକବଳହୀନ କାର୍ଯ୍ୟ ହେବ । ସ୍ୱାର୍ଥପର ଉଦ୍ଦେଶ୍ୟ ରଖି ମୁଁ ପ୍ରାର୍ଥନା କରିବାକୁ ପ୍ରସ୍ତୁତ ନୁହେଁ । ପାଠକ ଓ ବନ୍ଧୁଗଣ ! ''ଏହା କ'ଣ ଔଦ୍ଧତ୍ୟ ?'' ତାହା ଯଦି ହୋଇଥାଏ, ମୁଁ ତହିଁରେ ଅଟଳ ରହିଛି ।

# ''ଦି ଡ୍ରିମ୍‌ଲାଣ୍ଡ'' ର ମୁଖବନ୍ଧ

ମୋ ମହାମନା ବନ୍ଧୁ ଏଲ୍‌.ରାମଶରଣ ଦାସ, ତାଙ୍କ କବିତା ଗ୍ରନ୍ଥ ''ଦି ଡ୍ରିମ୍‌ଲାଣ୍ଡ'' ପାଇଁ ଗୋଟିଏ ମୁଖବନ୍ଧ ଲେଖିଦେବାକୁ ଅନୁରୋଧ କରିଛନ୍ତି । ମୁଁ ଜଣେ କବି, ସାହିତ୍ୟିକ, କିମ୍ବା ସାମ୍ବାଦିକ ଅଥବା ସମାଲୋଚକ ନୁହେଁ । ତେଣୁ କଳ୍ପନାକୁ ଯେତେ ପ୍ରସାରିତ କଲେ ମଧ୍ୟ ସେ ଅନୁରୋଧ ଲାଗି ମୁଁ ଯଥାର୍ଥତା ପାଉ ନାହିଁ । ମୁଁ ମଧ୍ୟ ଏପରି ପରିସ୍ଥିତିରେ ଅଛି ଯେ ସେ ବିଷୟରେ ପୁଙ୍ଖାନୁପୁଙ୍ଖ ଭାବରେ ଗ୍ରନ୍ଥକର୍ତ୍ତାଙ୍କ ସହିତ ବିଚାର ବିମର୍ଶ କରିପାରିବି ନାହିଁ । ତେଣୁ ବନ୍ଧୁଙ୍କର ଅନୁରୋଧ ରକ୍ଷା କରିବା ଛଡ଼ା ମୋର ଗତ୍ୟନ୍ତର ନାହିଁ ।

ମୁଁ ଯେହେତୁ ଜଣେ କବି ନୁହଁ, ମୁଁ ସେ ଦୃଷ୍ଟିରୁ ଆଲୋଚନା କରିବାକୁ ଯାଉ ନାହିଁ । ଛନ୍ଦ ବିଷୟରେ ମୋର ଆଦୌ ଜ୍ଞାନ ନାହିଁ, ଏବଂ ଜାଣେନା ଛନ୍ଦ ଦୃଷ୍ଟିରୁ ଆଲୋଚନା କରିବା କେତେଦୂର ଠିକ୍ ହେବ । ମୁଁ ସାହିତ୍ୟିକ ହୋଇ ନଥିବାରୁ ଜାତୀୟ ସାହିତ୍ୟରେ ଏହାର ସ୍ଥାନ ନିରୂପଣ କରିବାକୁ ଯାଉନାହିଁ ।

ମୁଁ ଜଣେ ରାଜନୈତିକ କର୍ମୀ ହୋଇଥିବାରୁ ଖୁବ୍ ବେଶୀ ହେଲେ ସେହି ଦୃଷ୍ଟିରୁ ମୁଁ ତାହାକୁ ଆଲୋଚନା କରିପାରେ । ତହିଁରେ ମଧ୍ୟ ଗୋଟିଏ କଥା ଏ କାର୍ଯ୍ୟକୁ ଅସମ୍ଭବ କରି ରଖୁଛି କିମ୍ବା କଷ୍ଟକର କରିଦେଉଛି । ନିୟମ ଅନୁସାରେ ଗୋଟିଏ ଗ୍ରନ୍ଥର ମୁଖବନ୍ଧ ସେହି ଲୋକ ଲେଖନ୍ତି, ଯେ ଗ୍ରନ୍ଥର ତଥ୍ୟ ବିଷୟରେ ଲେଖକଙ୍କ ସାଂଗରେ ଏକମତ ହୋଇଥାନ୍ତି । କିନ୍ତୁ ଏଠାରେ କଥାଟି ସମ୍ପୂର୍ଣ୍ଣ ଭିନ୍ନ । ମୁଁ ଲେଖକଙ୍କ ସହିତ ଏକମତ ହୋଇପାରୁ ନାହିଁ । ସେ ମଧ୍ୟ ଏହା ଜାଣନ୍ତି ଯେ ଅନେକ ମୁଖ୍ୟ ବିଷୟରେ ତାଙ୍କ ସହିତ ମୋର ସହମତି ନାହିଁ । ତେଣୁ ମୁଁ ଯାହା ଲେଖୁଛି, ତାହା ମୁଖବନ୍ଧ ବୋଲି କୁହାଯିବ ନାହିଁ । ଖୁବ୍ ହେଲେ ଏହା ଏକ ଗ୍ରନ୍ଥ ସମାଲୋଚନା; ଯାହାର ସ୍ଥାନ ଗ୍ରନ୍ଥର ପ୍ରାରମ୍ଭରେ ନ ରହି ଶେଷରେ ରହିବା କଥା ।

ରାଜନୈତିକ କ୍ଷେତ୍ରରେ ''ଦି ଡ୍ରିମ୍‌ଲାଣ୍ଡ'' ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଅଛି । ଚଳନ୍ତି ପରିସ୍ଥିତିରେ ଏହା ଆନ୍ଦୋଳନର ଏକ ପ୍ରଧାନ ଶୂନ୍ୟସ୍ଥାନକୁ ପୂରଣ କରୁଅଛି । ବସ୍ତୁତଃ ଆମ ଦେଶର ସକଳ ରାଜନୈତିକ ଆନ୍ଦୋଳନ, ବିଶେଷ କରି ଯେଉଁସବୁ ଆନ୍ଦୋଳନ ଆମ ଅଧୁନାତନ ଇତିହାସରେ ପ୍ରଧାନ ଭୂମିକା ଗ୍ରହଣ କରିଛନ୍ତି, ସେମାନଙ୍କର କୌଣସି ନିର୍ଦ୍ଦିଷ୍ଟ ଆଦର୍ଶ ନାହିଁ, ଯାହାକୁ ଲାଭ କରିବା ନିମିତ୍ତ ସେମାନେ ଲକ୍ଷ୍ୟ ରଖୁଛନ୍ତି ।

କ୍ରାନ୍ତିକାରୀ ଆନ୍ଦୋଳନ ମଧ ଏଥିରୁ ବାଦ୍ ପଡ଼ିଯାଇ ନାହିଁ । ସମସ୍ତ ଶକ୍ତି ବିନିଯୋଗ କରି ମୁଁ ଦେଖିଛି, କୌଣସି ଗୋଟିଏ କ୍ରାନ୍ତିକାରୀ ଦଳ ଯାହାର ନିଜ ଆଦର୍ଶ ବିଷୟରେ ସ୍ପଷ୍ଟ ଧାରଣା ଅଛି । କେବଳ ଗଦାର ଦଳ ହେଉଛି ଏକ ବ୍ୟତିକ୍ରମ, ଯେ ଆମେରିକୀୟ ଶାସନ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ସ୍ପଷ୍ଟ କହିଛନ୍ତି ଯେ ସେମାନେ ପ୍ରଚଳିତ ଶାସନ ପ୍ରଣାଳୀକୁ ପରିବର୍ତ୍ତନ କରି ଲୋକତାନ୍ତ୍ରିକ ଶାସନ ପ୍ରଚଳନ କରିବେ । ଅନ୍ୟ ସମସ୍ତ ଦଳର ସଭ୍ୟମାନଙ୍କର ଗୋଟିଏ ମାତ୍ର ଲକ୍ଷ୍ୟ ଥିଲା, ତା ହେଉଛି ବିଦେଶୀ ଶାସନ ବିରୁଦ୍ଧରେ ଲଢ଼ିବା । ସେ ଭାବନା ପ୍ରଶଂସନୀୟ, କିନ୍ତୁ ତାହାକୁ କ୍ରାନ୍ତିକାରୀ ଭାବନା ବୋଲି କୁହାଯାଇ ପାରିବନାହିଁ । ଆମ୍ଭେ ଏହା ସ୍ପଷ୍ଟ କରିଦେବା ଉଚିତ ଯେ କ୍ରାନ୍ତିକାରୀ ଆନ୍ଦୋଳନ କେବଳ ଏକ ବୈପ୍ଳବିକ ରକ୍ତାକ୍ତ ସଂଗ୍ରାମ ନୁହେଁ । କ୍ରାନ୍ତିର ଅର୍ଥ ହେଉଛି ପ୍ରଚଳିତ ଶାସନର ସମ୍ପୂର୍ଣ୍ଣ ଧ୍ୱଂସ ସାଧନକରି ତା' ସ୍ଥାନରେ ଅଧିକ ଉପଯୋଗୀ ଏକ ନୂତନ ସମାଜର ପୁନର୍ନିର୍ମାଣ କରିବା ।

ରାଜନୈତିକ କ୍ଷେତ୍ରରେ ଉଦାରପନ୍ଥୀମାନେ ପ୍ରଚଳିତ ଶାସନରେ କେତେକ ସଂଶୋଧନାତ୍ମକ ପରିବର୍ତ୍ତନ ଆଣିବାକୁ ଚାହିଁଥିଲେ । କିନ୍ତୁ ଚରମପନ୍ଥୀମାନେ ଆଉ ଅଧିକ କିଛି ଦାବିକରି ଲକ୍ଷ୍ୟ ହାସଲ ନିମିତ୍ତ ଅସ୍ତ୍ର ବ୍ୟବହାର କରିବାପାଇଁ ପ୍ରସ୍ତୁତ ଥିଲେ । କ୍ରାନ୍ତିକାରୀମାନଙ୍କ ମଧ୍ୟରେ ଅନେକ ଥିଲେ ବ୍ୟକ୍ତି ଯେଉଁମାନେ ବିଦେଶୀ ଶାସନକୁ ଉନ୍ମୂଳନ କରିବାପାଇଁ ଚରମ ପଦ୍ଧତି ଆଶ୍ରୟ କରିବା ସପକ୍ଷରେ ଥିଲେ । ଏହା ନିଃସନ୍ଦେହ ଯେ ସେମାନଙ୍କ ମଧ୍ୟରେ କେତେକ ବ୍ୟକ୍ତି ଥିଲେ ଯେଉଁମାନେ ସେହି ପଦ୍ଧତି ପ୍ରୟୋଗ କରି କିଛି ସଂଶୋଧନାତ୍ମକ ପରିବର୍ତ୍ତନ ଆଣିବାକୁ ଚାହୁଥିଲେ । ଏ ସବୁକୁ ଠିକଣା କ୍ରାନ୍ତିକାରୀ ଆନ୍ଦୋଳନ ବୋଲି କୁହାଯାଇପାରିବ ନାହିଁ ।

କିନ୍ତୁ ଏଲ୍. ରାମଶରଣ ଦାସ ହେଉଛନ୍ତି ପ୍ରଥମ କ୍ରାନ୍ତିକାରୀ ବ୍ୟକ୍ତି ଯିଏ ୧୯୦୮ ମସିହାରେ ବିଧିବଦ୍ଧ ଭାବରେ ପଞ୍ଜାବରେ ଜଣେ ବଂଗାଳି ଆତ୍ମଗୋପନକାରୀଙ୍କ ଦ୍ୱାରା କ୍ରାନ୍ତି ଆନ୍ଦୋଳନରେ ଦୀକ୍ଷିତ ହୋଇଥିଲେ । ସେହିଦିନଠାରୁ ସେ କ୍ରାନ୍ତିକାରୀ ଆନ୍ଦୋଳନ ସଂସ୍ପର୍ଶରେ ରହିଆସିଥିଲେ, ଏବଂ ପରିଶେଷରେ ଗଦାର ଦଳରେ ଯୋଗ ଦେଲେ କିନ୍ତୁ ଆନ୍ଦୋଳନର ଲକ୍ଷ୍ୟ ବିଷୟରେ ସେ ତାଙ୍କର ପୂର୍ବ୍ୱ ବିଚାରକୁ ଗ୍ରହଣ କରିଥିଲେ । ଆଉ ଗୋଟିଏ କଥା କହୁଛି, ଯାହା ତାଙ୍କ ଲେଖା ଓ ବ୍ୟକ୍ତିତ୍ୱ ବିଷୟରେ ଆକର୍ଷଣୀୟ ଓ ମୂଲ୍ୟବାନ ଅଟେ । ଏଲ. ରାମଶରଣ ଦାସ ୧୯୧୫ ମସିହାରେ ମୃତ୍ୟୁଦଣ୍ଡ ପାଇଥିଲେ ଏବଂ ପରେ ତାଙ୍କ ଦଣ୍ଡକୁ କୋହଳ କରି ଆଜୀବନ ଦ୍ୱୀପାନ୍ତର ଦଣ୍ଡ ଦିଆଯାଇଥିଲା । ଆଜି ମୁଁ ଏହି ଅପନିନ୍ଦିତ କାରାଗୃହରେ ବସି ମୋ ପାଠକ ମାନଙ୍କୁ ନିଜ ଅନୁଭବରୁ ଜଣାଇ ଦେଉଛି ଯେ ଆଜୀବନ କାରାଦଣ୍ଡ ମୃତ୍ୟୁଠାରୁ ଅଧିକ ଯନ୍ତ୍ରଣାଦାୟକ । ଏଲ୍. ରାମଶରଣ ଦାସ ଚଉଦବର୍ଷ କାରାଦଣ୍ଡ ଦକ୍ଷିଣରେ କେଉଁ କାରାଗାରରେ ଭୋଗିଥିଲେ ଓ ଏହି କବିତା ରଚନା କରିଥିଲେ । ସେ ସମୟରେ ତାଙ୍କ ମାନସିକ ସ୍ଥିତି ଏବଂ ମାନସିକ ଦ୍ୱନ୍ଦ୍ୱ ଏହି କବିତାରେ ମୁଦ୍ରାଙ୍କିତ ହୋଇଯାଇଛି ଓ ଏହାକୁ ଅଧିକ ଆକର୍ଷଣୀୟ ଓ ସୌନ୍ଦର୍ଯ୍ୟ ଯୁକ୍ତ

କରିଛି । ପୂର୍ବରୁ ସେ କେତେକ ଅବସାଦକର ଭାବନା ସଂଗରେ କଠିନ ସଂଗ୍ରାମ କରୁଥିବାବେଳେ ସେ ଏହାକୁ ଲେଖିବାକୁ ସ୍ଥିର କଲେ । ସେଦିନରେ କ୍ଷମାପତ୍ର ଦାଖଲ କରି ଅନେକ ସାଥୀ ଯେତେବେଳେ ମୁକ୍ତ ହୋଇଯାଉଥିଲେ ପ୍ରତ୍ୟେକ ବନ୍ଦୀଙ୍କ ମନରେ ଏବଂ ଲେଖକଙ୍କ ମନରେ ତାହାର ପ୍ରଲୋଭନ ବିଶେଷ ଚାପ ସୃଷ୍ଟି କରୁଥିଲା । ଯେତେବେଳେ ପତ୍ନୀ ଓ ସନ୍ତାନମାନଙ୍କ ସୁଖ ଦୁଃଖ ଭାବନାରେ ବିବଶ ହୋଇ ତାଙ୍କର ମୁକ୍ତି ପାଇବା ଇଚ୍ଛା ବଳବତ୍ତର ହେଉଥିଲା, ଏବଂ ତାହା ତାଙ୍କର ନୈତିକ ମନୋବଳ ସହିତ ସଂଘର୍ଷ ଘଟାଉଥିଲା, ସେ ଏହି ଗ୍ରନ୍ଥ ରଚନା କରିବା ପାଇଁ ମନୋନିବେଶ କଲେ । ସେଥିପାଇଁ ପ୍ରଥମ ପଦରେ ତାହା ପ୍ରକଟିତ ହୋଇଛି–

''ସ୍ତ୍ରୀ, ସନ୍ତାନ ଓ ବନ୍ଧୁଙ୍କ ଭାବନା
ମୋ ଚାରିକଡ଼ରେ ବିଷାକ୍ତ ସର୍ପମାନଙ୍କ ପରି
ଘେରି ରହିଥିଲା ।''

ଆରମ୍ଭରେ ସେ ଦର୍ଶନର ଚର୍ଚ୍ଚା କରିଛନ୍ତି । ଏହି ଦର୍ଶନ ବଂଗଳା ଓ ପଞ୍ଜାବର ସମସ୍ତ କ୍ରାନ୍ତି ଆନ୍ଦୋଳନର ମେରୁଦଣ୍ଡ ସ୍ୱରୂପ ଥିଲା । ମୁଁ ତାଙ୍କଠାରୁ ଏଇଠି ବିଶେଷ ଭାବରେ ଭିନ୍ନମତ ପୋଷଣ କରିଛି । ସେ ଏହି ବିଶ୍ୱକୁ ଅଭିପ୍ରାୟମୂଳକ ଏବଂ ଆଧିଭୌତିକ ବୋଲି ବ୍ୟାଖ୍ୟା କରିଛନ୍ତି । ମୁଁ ହେଉଛି ଜଣେ ଭୌତିକବାଦୀ ଏବଂ ଘଟଣାମାନଙ୍କର ବ୍ୟାଖ୍ୟା ମୋର ହେଉଛି କାରଣଗତ ବ୍ୟାଖ୍ୟା । ତଥାପି ତାଙ୍କ ବ୍ୟାଖ୍ୟାକୁ ଦେଶ–କାଳ ଦୃଷ୍ଟିରୁ କୌଣସିମତେ ଅନୁପଯୁକ୍ତ ବୋଲି କୁହାଯାଇପାରିବ ନାହିଁ । ଆମ ଦେଶରେ ଯେଉଁ ବ୍ୟାଖ୍ୟା ସାଧାରଣତଃ ପ୍ରଚଳିତ ଥିଲା, ତାହା ସହିତ ସାମଞ୍ଜସ୍ୟ ରକ୍ଷା କରି ସେ କବିତାରେ ଭାବ ପ୍ରକାଶ କରିଛନ୍ତି । ନିଜର ଅବସାଦଗ୍ରସ୍ତ ମନୋଭାବ ସହିତ ସଂଗ୍ରାମ କରିବା ପାଇଁ ସେ ପ୍ରାର୍ଥନାକୁ ଆଦରି ନେଇଥିଲେ । ଗ୍ରନ୍ଥକୁ ପ୍ରଥମରୁ ସମୁଦାୟ ଭାବରେ ସେଥିଲାଗି ସେ ଈଶ୍ୱରଙ୍କ ପାଇଁ ନିୟୋଜିତ କରିଛନ୍ତି । ଈଶ୍ୱରଙ୍କ ମହିମାଗାନ, ତାଙ୍କର ଲକ୍ଷଣ ନିର୍ଣ୍ଣୟ, ଏବଂ ତାଙ୍କଠାରେ ବିଶ୍ୱାସ ହେଉଛି ବିଷାଦ ଓ ଅବସାଦରୁ ଜାତ ହେଉଥିବା ରହସ୍ୟବାଦର ଫଳ । ଏ ଜଗତ୍ ''ମାୟା', 'ମିଥ୍ୟା' ଏକ ସ୍ୱପ୍ନ ଓ କଳ୍ପନା ବୋଲି ଶଙ୍କରାଚାର୍ଯ୍ୟ ଓ ଅନ୍ୟ ହିନ୍ଦୁ ଋଷିମୁନିମାନେ ପ୍ରାଚୀନ କାଳରୁ ଯାହା କହିଆସିଛନ୍ତି ତାହା ସ୍ପଷ୍ଟ ଭାବରେ ରହସ୍ୟବାଦ । କିନ୍ତୁ ଭୌତିକବାଦୀ ଦର୍ଶନରେ ଏ ପ୍ରକାର ଭାବନାର ସାମାନ୍ୟତମ ସ୍ଥାନ ନାହିଁ । ଏହା ବୋଲି ଲେଖକଙ୍କ ରହସ୍ୟବାଦକୁ କୌଣସି ମତେ ଉପେକ୍ଷଣୀୟ ଓ ଶୋଚନାଯୋଗ୍ୟ ବୋଲି କୁହାଯାଇ ପାରିବ ନାହିଁ । ତାହାର ନିଜସ୍ୱ ସୌନ୍ଦର୍ଯ୍ୟ ଓ ଚିତ୍ତାକର୍ଷକ ଗୁଣ ରହିଛି ବୋଲି ଅସ୍ୱୀକାର କରିହେବ ନାହିଁ । ଉଦାହରଣ ସ୍ୱରୂପ ଦେଖନ୍ତୁ–

ପରିଚୟହୀନ ଅସ୍ପଷ୍ଟ ଆଧାରଶିଳା ହୋଇ
ପ୍ରସନ୍ନ ଭାବରେ ନିଜ ବକ୍ଷରେ
କାରୁକାର୍ଯ୍ୟ ମଣ୍ଡିତ ବିଶାଳ ସୌଧକୁ

ଧାରଣ କରନ୍ତୁ ପ୍ରଚଣ୍ଡ ଚାପକୁ ସହନ କରନ୍ତୁ ।
ଦୁଃଖ ଭୋଗରେ ହିଁ ଯଥାର୍ଥ ଆଶ୍ରୟ ପାଆନ୍ତୁ ।
ସୌଧ ଶିଖରର ସୁଧା ଲେପିତ ଶିଳାକୁ
ଈର୍ଷା କରନ୍ତୁ ନାହିଁ ।
ତା' ଉପରେ ତ ସାରା ସଂସାରର
ପ୍ରଶଂସା ବୃଷ୍ଟି ହେଉଛି ।

ମୋ ନିଜ ବ୍ୟକ୍ତିଗତ ଅନୁଭବରୁ ପ୍ରାମାଣିକ ଭାବରେ କହୁଛି, ଗୁପ୍ତକର୍ମରେ ନିରନ୍ତର ଲାଗି ରହିଥିବା ବ୍ୟକ୍ତି ବିପଦାପନ୍ନ ଜୀବନ ଯାପନ କରିଥାଏ । 'ଆଶା ଓ ଭୟ' ତାକୁ ସ୍ପର୍ଶ କରେ ନାହିଁ । ଅଜ୍ଞାତ, ସମ୍ମାନ ରହିତ, ଅପ୍ରଶଂସିତ ହୋଇ ମୃତ୍ୟୁବରଣ କରିବା ପାଇଁ ସେ ପ୍ରସ୍ତୁତ ହୋଇଥାଏ । ତା'ହେଲେ ବ୍ୟକ୍ତିଗତ ପ୍ରଲୋଭନର ଆବେଗକୁ ଏହିଭଳି ରହସ୍ୟବାଦ ଦ୍ୱାରା ପ୍ରତିହତ କରିବା ପାଇଁ ପଡ଼ିଥାଏ; ଓ ତାହା କୌଣସି ମତେ ନୈତିକ ମନୋବଳକୁ ମଳିନ କରେନାହିଁ । ତା'ପରେ ସେ ବିପ୍ଲବୀ କ୍ରାନ୍ତିକାରୀର ମନୋବୃତ୍ତି ବିଷୟ କହିଛନ୍ତି– ଏଲ୍. ରାମଶରଣ ଦାସ କ୍ରାନ୍ତିକାରୀ ଦଳର ସଭ୍ୟ ଥିଲେ; ସେ ଦଳକୁ ଅନେକ ହିଂସାତ୍ମକ କର୍ମ ପାଇଁ ଦାୟୀ କରାଯାଉଥିଲା । କିନ୍ତୁ ଏଥିରୁ ପ୍ରମାଣିତ ହେଉ ନାହିଁ ଯେ କ୍ରାନ୍ତିକାରୀ ବିପ୍ଳବୀମାନେ ରକ୍ତପିପାସୁ ବିକଟାକାର ରାକ୍ଷସ, ଯେ ଧ୍ୱଂସ କ୍ରିୟାରେ ହିଁ ଆନନ୍ଦ ପାଇଥାନ୍ତି । ପଢ଼ନ୍ତୁ–

ଯଦି ପ୍ରୟୋଜନ ପଡ଼େ, ବାହାରକୁ ହୁଅ ତୁମେ
ରୌଦ୍ର ଆରଣ୍ୟକ, ହିଂସ୍ର ଭୟଙ୍କର ।
ଅନ୍ତରରେ ଭରିଥାଉ କୁସୁମ କୋମଳ ବୃତ୍ତି
ଯାହା ଅଟେ ଜନ ଶୁଭଙ୍କର ।
ଫଣାରେ ଫୁତ୍କାର ତୋଳ, ନକରି ଦଂଶନ
ହୃଦୟରେ ପ୍ରେମ ଭରି
କରିପାର ରଣାଙ୍ଗନେ ଶକ୍ତି ପ୍ରଦର୍ଶନ ।

ନିର୍ମାଣ ପାଇଁ ଧ୍ୱଂସ ଯେ କେବଳ ମୌଳିକ କର୍ମ ତାହା ନୁହେଁ, ତାହା ଅନିବାର୍ଯ୍ୟ କର୍ମ । କ୍ରାନ୍ତିକାରୀମାନେ ତାଙ୍କ କର୍ମ ପଦ୍ଧତିରେ ଧ୍ୱଂସକୁ ପ୍ରୟୋଜନୀୟ କର୍ମ ଭାବରେ ଗ୍ରହଣ କରିଥାନ୍ତି, କିନ୍ତୁ ହିଂସା ଓ ଅହିଂସାର ଦର୍ଶନ ଚମତ୍କାର ଭାବରେ ଉଲ୍ଲିଖିତ ପଂକ୍ତିରେ ପ୍ରକାଶିତ ହୋଇଛି । ଲେଲିନ ଥରେ ଗର୍କିଙ୍କୁ କହିଲେ ଯେ, ସେ ସଂଗୀତ ଶୁଣି ପାରନ୍ତି ନାହିଁ । ତାହା ତାଙ୍କ ସମଗ୍ର ସ୍ନାୟୁମଣ୍ଡଳକୁ ବିକୃତ କରିଦିଏ । ତେଣୁ ସେହି କଳାକାରମାନଙ୍କ ମସ୍ତକକୁ ହାତରେ ଲଘୁ ଆଘାତ କରିବାକୁ ଇଚ୍ଛା ହୁଏ । ''କିନ୍ତୁ'' ସେ କହିଚାଲିଲେ, ''ମସ୍ତକକୁ ଲଘୁ ଆଘାତ କରିବା ସମୟ ଏ ନୁହେଁ । ହାତ ଓହ୍ଲାଇ ଆସୁଛି ମସ୍ତକର ଖପୁରୀକୁ ଚୂର୍ଣ୍ଣ କରିଦେବା ପାଇଁ, ଯଦିବା ସକଳ ପ୍ରକାର ହିଂସାର ଅବସାନ ଘଟାଇବା,

ହେଉଛି ଆମର ଲକ୍ଷ୍ୟ ।'' କ୍ରାନ୍ତିକାରୀମାନେ ଯେତେବେଳେ ହିଂସାକୁ ଅତିଶୟ ପ୍ରୟୋଜନ ବଶତଃ ସାଧନ ଭାବରେ ଗ୍ରହଣ କରନ୍ତି ସେମାନେ ଠିକ୍ ଏହିପରି ଭାବିଥାନ୍ତି ।

ଏହାପରେ ବିଭିନ୍ନ ଧର୍ମୀୟ ମତବାଦ ମାନଙ୍କର ପରସ୍ପର ବିରୋଧ ବିଷୟକ ସମସ୍ୟା ଲେଖକ ଉଲ୍ଲେଖ କରିଛନ୍ତି । ସେ ସେମାନଙ୍କ ମଧ୍ୟରେ ସମୀକରଣ ପାଇଁ ଚେଷ୍ଟା କରନ୍ତି, ଯେପରି ଜାତୀୟବାଦୀମାନେ କରିଥାନ୍ତି । ଏହି ପ୍ରଶ୍ନକୁ ସମାଧାନ କରିବା ପାଇଁ ଦୀର୍ଘ ଏବଂ ବକ୍ରପଥ ଆଦରିବାକୁ ପଡ଼େ । ମୋ ପକ୍ଷରେ ମୁଁ ଏହି ସମସ୍ୟାକୁ କାର୍ଲମାର୍କ୍ସଙ୍କ ଗୋଟିଏ ଧାଡ଼ିରେ ଡିସ୍‌ମିସ୍ କରିଦେଇଥାନ୍ତି ଯେ ''ଧର୍ମ ହେଉଛି ଜନମାନଙ୍କ ପାଇଁ ଅଫିମ ।''

ପରିଶେଷରେ ଏହି କବିତାରେ ଯେଉଁଠି ଆମେ ସୃଷ୍ଟି କରିବାକୁ ଚାହୁଁଥିବା ସମାଜର ଭବିଷ୍ୟତ ରୂପ ଉପସ୍ଥାପନ କରାଯାଇଛି ତାହା ସବୁଠାରୁ ଅଧିକ ପ୍ରଣିଧାନ ଯୋଗ୍ୟ । ମୁଁ ଗୋଟିଏ କଥା ପ୍ରଥମରୁ ସ୍ପଷ୍ଟ କରିଦେବାକୁ ଚାହୁଛି । ''ଦି ଡ୍ରିମ୍‌ଲାଣ୍ଡ'' ହେଉଛି ଯଥାର୍ଥ ଭାବରେ ଏକ କାଳ୍ପନିକ ସୃଷ୍ଟି (ୟୁଟୋପିଆ) । ଗ୍ରନ୍ଥର ଶିରୋନାମରେ ଲେଖକ ତାହା ନିଷ୍କପଟ ଭାବରେ ବ୍ୟକ୍ତ କରିଅଛନ୍ତି । ସେ ଗୋଟିଏ ବୈଜ୍ଞାନିକ ସନ୍ଦର୍ଭ ରଚନା କରୁଅଛନ୍ତି ବୋଲି ଛଳନା କରିନାହାନ୍ତି । ''ଡ୍ରିମ୍‌ଲାଣ୍ଡ'' ଶିରୋନାମରେ ତାହା ସ୍ପଷ୍ଟ ହୋଇଯାଇଛି । କିନ୍ତୁ ୟୁଟୋପିଆନ୍‌ମାନେ ନିଃସନ୍ଦେହ ଭାବରେ ସମାଜର ପ୍ରଗତି ପାଇଁ ପ୍ରୟୋଜନକୁ ଆସିଥାନ୍ତି । ଯେପରି ସେଣ୍ଟ ସାଇମନ, ଫଉରିଅର୍, ଏବଂ ରବର୍ଟ ଓୟେନ ଏବଂ ସେମାନଙ୍କ ମୀମାଂସାମାନ ନଥିଲେ ମାର୍କସ୍‌ଙ୍କ ବୈଜ୍ଞାନିକ ସମାଜବାଦ ସମ୍ଭବ ହୋଇନଥାନ୍ତା । ଏଲ୍. ରାମଶରଣ ଦାସଙ୍କ ୟୁଟୋପିଆ ସେହି ସ୍ଥାନ ଅଧିକାର କରିଛି । ଯେତେବେଳେ ଆମେ କରୁଥିବା କର୍ମର ଦାର୍ଶନିକ ପଦ୍ଧତି ନିର୍ଣ୍ଣୟ କରାଯାଇ ଯଥାପଦ୍ଧତିରେ ବ୍ୟବସ୍ଥିତ କରାଯିବ ଏବଂ ଆନ୍ଦୋଳନକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ନିର୍ଣ୍ଣୟ କରାଯିବ, ସେତେବେଳେ ଏହି ଗ୍ରନ୍ଥର ମହତ୍ତ୍ୱ ଓ ଉପଯୋଗିତା ଆମର ବୋଧଗମ୍ୟ ହେବ ।

ମୁଁ ଲକ୍ଷ୍ୟ କରିଛି ଯେ ଲେଖକଙ୍କର ପ୍ରକାଶ ଶୈଳୀ କିଞ୍ଚିତ ଅପରିପକ୍ୱ । ଚଳିତ ସମାଜର ଭାବଧାରା ତାଙ୍କୁ ଛାଡ଼ି ପାରିନାହିଁ । ତାଙ୍କ ଇଉଟୋପିଆ (କାଳ୍ପନିକ ସମାଜ) ରେ ମଧ୍ୟ ତାହାର ଛାୟା ପଡ଼ିଛି ।

''ଅଭାବୀ ଲୋକମାନଙ୍କୁ ଦାନ ଦେବ ।''

ଆମେ ଯେଉଁ ଭବିଷ୍ୟତ ସମାଜ ଗଢ଼ିବାକୁ ଯାଉଛୁ, ତାହା ହେଉଛି କମ୍ୟୁନିଷ୍ଟ ସମାଜ । ଆମେ ଦାତବ୍ୟ ଅନୁଷ୍ଠାନ ପ୍ରତିଷ୍ଠା କରିବାକୁ ଯାଉନାହୁଁ । ସେ ସମାଜରେ ଅଭାବୀ ଓ ଦରିଦ୍ର ନଥିବେ । ତେଣୁ ଦାନ ଦେବା ଓ ନେବା ନଥିବ । ଏଭଳି ପାର୍ଥକ୍ୟ ରହିଥିଲେ ହେଁ ପ୍ରଶ୍ନଟି ଅତି ଚମତ୍କାର ଭାବରେ ଉପସ୍ଥାପିତ କରାଯାଇଛି ।

ସମାଜର ସ୍ୱରୂପ ସମ୍ବନ୍ଧୀୟ ସାଧାରଣ ରେଖାଙ୍କନ ଭାବରେ ସେ ଯାହା କରିଛନ୍ତି, ତାହା ବୈଜ୍ଞାନିକ ସମାଜବାଦ ସହିତ ପ୍ରାୟଶଃ ସମାନ । କିନ୍ତୁ ଏପରି କିଛି ତହିଁରେ

ରହିଛି, ଯାହାକୁ ବିରୋଧ କରିବା, ଓ ତହିଁରେ ଭିନ୍ନମତ ପୋଷଣ କରିବା, ଅର୍ଥାତ୍ ସଂକ୍ଷେପରେ କହିଲେ, ତାହାକୁ ସଂଶୋଧନ କରିବାର ଆବଶ୍ୟକତା ରହିଛି । ଉଦାହରଣ ସ୍ୱରୂପ, ୪୨୭ ପଦରେ ପାଦଟୀକାରେ ସେ ଲେଖିଛନ୍ତି ସରକାରୀ କର୍ମଚାରୀମାନଙ୍କୁ ନିଜ ରୋଜଗାର ପାଇଁ ବିଲବାଡ଼ିରେ କିମ୍ବା କଳକାରଖାନାରେ ଦୈନିକ ଚାରିଘଣ୍ଟା ପରିଶ୍ରମ କରିବାକୁ ପଡ଼ିବ । ଏହା ହେଉଛି ଆଉ ଏକ ୟୁଟୋପିଆନ୍ (କାଳ୍ପନିକ ବ୍ୟବସ୍ଥା) ଏବଂ ବ୍ୟବହାର ଅନୁପଯୋଗୀ ଅବାସ୍ତବ ପ୍ରସ୍ତାବ । ପ୍ରଚଳିତ ବ୍ୟବସ୍ଥାରେ କର୍ମଚାରୀମାନେ ଅନୁଚିତ ଭାବରେ ବହୁ ପରିମାଣ ଦରମା ନେଉଥିବାର ପ୍ରତିକ୍ରିୟା ଭାବରେ ଏପରି କୁହାଯାଇଛି । ବାସ୍ତବ ପକ୍ଷରେ ବୋଲସେଭିଷ୍ଟଙ୍କୁ ସ୍ୱୀକାର କରିବାକୁ ପଡ଼ିଛି ଯେ ମାନସିକ ଶ୍ରମ ଶାରୀରିକ ଶ୍ରମ ପରି ଉତ୍ପାଦନଶୀଳ ଶ୍ରମ ଅଟେ । ଭବିଷ୍ୟତ ସମାଜରେ ଯେତେବେଳେ ବିଭିନ୍ନ ମୌଳିକ ତତ୍ତ୍ୱମାନଙ୍କୁ ସମାନତା ଆଧାରରେ ସମୀକରଣ ଓ ବ୍ୟବସ୍ଥାପିତ କରାଯିବ, ସେତେବେଳେ ଉତ୍ପାଦକମାନଙ୍କୁ ତଥା ବିତରକମାନଙ୍କୁ ସମାନ ମହତ୍ତ୍ୱର ଅଧିକାରୀ ବୋଲି ବିଚାର କରାଯିବ । ଜଣେ ସାମୁଦ୍ରିକଠାରୁ ତୁମ୍ଭର ଆଶା କରିବା ଉଚିତ ହେବ ନାହିଁ ଯେ ସେ ତାହାର ଜାହାଜ ଚାଳକକୁ ବନ୍ଦ କରି ପ୍ରତି ଚବିଶ ଘଣ୍ଟାରେ ଚାରିଘଣ୍ଟା ପାଇଁ ସ୍ଥଳଭାଗକୁ ଆସି ନିଜର ଅନ୍ନ ଉପାର୍ଜନ ଲାଗି ଦୈନନ୍ଦିନ ଚାରିଘଣ୍ଟିଆ ଶାରୀରିକ ଶ୍ରମ ସମାପନ କରିବ କିମ୍ବା ଜଣେ ବୈଜ୍ଞାନିକ ନିଜ ପରୀକ୍ଷଣାଗାର ଓ ପରୀକ୍ଷଣ କର୍ମକୁ ଛାଡ଼ି କ୍ଷେତକୁ ଆସି ତା' ଭାଗରେ ପଡ଼ିଥିବା ଚାରିଘଣ୍ଟିଆ ଶାରୀରିକ ଶ୍ରମ କରିଯିବ । ନାବିକ ଓ ବୈଜ୍ଞାନିକ ଉଭୟ ଠିକଣା ଉତ୍ପାଦନଶୀଳ କର୍ମ କରୁଛନ୍ତି । କିନ୍ତୁ ଏତିକି ପାର୍ଥକ୍ୟ ହେଉଛି ଯେ ସମାଜବାଦୀ ସମାଜ ଆଶା କରୁଛି ଯେ ମାନସିକ କର୍ମୀମାନେ ଶାରୀରିକ କର୍ମୀମାନଙ୍କ ଠାରୁ ଆଉ ଏଣିକି ଉତ୍କୃଷ୍ଟତର ବୋଲି ବିବେଚିତ ହେବେନାହିଁ ।

ଦରମା ନଦେଇ ଛାତ୍ରମାନେ ବିଦ୍ୟାଳୟରେ ପଢ଼ିବାକୁ ସୁଯୋଗ ପାଇବେ, ଏଲ୍. ରାମଶରଣ ଦାସଙ୍କ ଏହି ଭାବନା ଏକ ବିଚାରଯୋଗ୍ୟ ବିଷୟ । ରୁଷ୍ ଦେଶରେ ସମାଜବାଦୀ ସରକାର ସେହି ପଦ୍ଧତିକୁ ଗ୍ରହଣ କରିନେଇଛନ୍ତି ।

ଅପରାଧ ବିଷୟରେ ତାଙ୍କ ଆଲୋଚନା ଯଥାର୍ଥରେ ଅଗ୍ରଗାମୀ ଚିନ୍ତାର ପରିଚୟ ଦିଏ । ଅପରାଧ ହେଉଛି ଏକ ଗମ୍ଭୀର ସାମାଜିକ ସମସ୍ୟା ଯାହାକୁ ଯଥେଷ୍ଟ ସତର୍କତା ସହିତ ସମାଧାନ କରିବାକୁ ହେବ । ଲେଖକ ଜୀବନର ଦୀର୍ଘ ସମୟର କାରାବାସରେ କଟାଇଛନ୍ତି । ତେଣୁ ତାଙ୍କର ସେ ବିଷୟରେ ବେଶ୍ ଅନୁଭବ ଅଛି । ଏକ ଯାଗାରେ କାରାଗାରରେ ବ୍ୟବହୃତ ହେଉଥିବା ନିଛକ ଶବ୍ଦମାନଙ୍କୁ ସେ ବ୍ୟବହାର କରିଛନ୍ତି, ''ହାଲ୍କା ଶ୍ରମ'', ''ମଧ୍ୟପ୍ରକାର ଶ୍ରମ'', ଏବଂ ''କଠିନ ଶ୍ରମ'' ଇତ୍ୟାଦି । ଅନ୍ୟ ସମାଜବାଦୀମାନଙ୍କ ପରି ସେ ପ୍ରସ୍ତାବ ଦେଇଛନ୍ତି ଯେ ଦଣ୍ଡବିଧାନର ମୂଳତତ୍ତ୍ୱ ପ୍ରତିଶୋଧାତ୍ମକ ନ ହୋଇ ସଂଶୋଧନାତ୍ମକ ହେବା ଉଚିତ । ନ୍ୟାୟ ପ୍ରଦାନର ମୂଳ ସୂତ୍ର ଦଣ୍ଡବିଧାନରେ ନୁହେଁ, ଅପରାଧୀକୁ ସନ୍ମାର୍ଗକୁ ଫେରାଇ ଆଣିବାରେ ନିହିତ । କାରାଗାର ଗୁଡ଼ିକ ଶୋଧନ ମନ୍ଦିର

ହେବା ବିଧେୟ; ସାକ୍ଷାତ୍ ନର୍କ ହେବା ବିଧେୟ ନୁହେଁ । ଏହି ପ୍ରସଙ୍ଗରେ ପାଠକ ରୁଷ୍ ଦେଶୀୟ କାରାଗାର ବ୍ୟବସ୍ଥା ଅଧ୍ୟୟନ କରିବା କଥା ।

ଦେଶରକ୍ଷାବାହିନୀ ବିଷୟରେ ଆଲୋଚନା କଲାବେଳେ ସେ ଯୁଦ୍ଧ ବିଷୟ ମଧ୍ୟ କହିଛନ୍ତି । ମୋ ବିଚାରରେ ନୂଆ ସମାଜ ଗଢ଼ା ହୋଇ ସାରିବା ପରେ ବିଶ୍ୱକୋଷରେ ଯୁଦ୍ଧ ବିଷୟରେ ସ୍ୱଳ୍ପ ସଂଖ୍ୟକ ପୃଷ୍ଠା ଦେଖିବାକୁ ମିଳିବ ଓ ଯୁଦ୍ଧ ସାମଗ୍ରୀ ସଂଗ୍ରହାଳୟର ଶୋଭା ବଢ଼ାଇବ, କାରଣ ସେ ସମାଜରେ ଯୁଦ୍ଧର କାରଣ ପରସ୍ପର ବିରୋଧି କିମ୍ବା ବିଭିନ୍ନ ସ୍ୱାର୍ଥର ସଂଘର୍ଷ ରହିବ ନାହିଁ । ଖୁବ୍ ବେଶୀରେ ଏତିକି ମାତ୍ର କୁହାଯାଇପାରିବ ଯେ ପରିବର୍ତ୍ତନର ମଧ୍ୟବର୍ତ୍ତୀ କାଳରେ ଯୁଦ୍ଧ ବ୍ୟବସ୍ଥା ରଖିବାକୁ ପଡ଼ିବ । ଆଧୁନିକ ରୁଷ୍ ଦେଶକୁ ଦୃଷ୍ଟାନ୍ତ ଭାବରେ ଦେଖିଲେ ତାହା ବୁଝିହେବ । ସେ ଦେଶରେ ବର୍ତ୍ତମାନ ସର୍ବହରାଙ୍କ ଅଧିନାୟକତ୍ୱ ପ୍ରଚଳିତ ଅଛି । ଜନସମାଜ ଏକ ସମାଜବାଦୀ ସମାଜ ପ୍ରତିଷ୍ଠା କରିବାକୁ ଚାହୁଁଛନ୍ତି । ଏହା ମଧ୍ୟରେ ପୁଞ୍ଜିବାଦୀ ସମାଜ ବିରୁଦ୍ଧରେ ନିଜକୁ ସୁରକ୍ଷା ଦେବା ପାଇଁ ସେମାନେ ଏକ ସେନାବାହିନୀ ରଖିଛନ୍ତି । କିନ୍ତୁ ସେମାନଙ୍କ ଯୁଦ୍ଧର ଲକ୍ଷ୍ୟ ଭିନ୍ନ ହେବ । ସାମ୍ରାଜ୍ୟବାଦୀମାନଙ୍କ ଚକ୍ରାନ୍ତ ଆଉ ଏଣିକି ଆମ ଡ୍ରିମ୍‌ଲାଣ୍ଡ (ସ୍ୱପ୍ନଲୋକ) ର ଲୋକମାନଙ୍କୁ ଯୁଦ୍ଧ ଲାଗି ପ୍ରବର୍ତ୍ତାଇ ପାରିବ ନାହିଁ । ଏଣିକି ଆଉ ବିଜୟ ସ୍ତମ୍ଭ ଚିହ୍ନ ରହିବ ନାହିଁ । କ୍ରାନ୍ତିକାରୀ ସେନାବାହିନୀ ଅନ୍ୟଦେଶକୁ ଶାସନ କିମ୍ବା ଲୁଣ୍ଠନ କରିବା ପାଇଁ ଯାତ୍ରା କରିବେ ନାହିଁ କିନ୍ତୁ ସେ ଦେଶର ପରାଙ୍ଗପୁଷ୍ଟ ଶାସକମାନଙ୍କୁ ତାଙ୍କ ସିଂହାସନରୁ ଚ୍ୟୁତ କରାଇ ସେମାନଙ୍କ ରକ୍ତଶୋଷଣ କ୍ରିୟାର ଅବସାନ ଘଟାଇ ଶ୍ରମିକ ଜନତାଙ୍କୁ ମୁକ୍ତ କରିଦେବେ । କିନ୍ତୁ ରାଷ୍ଟ୍ରୀୟ ବା ଜାତିଗତ ବିଦ୍ୱେଷ ପରି ଆଦିମ ପ୍ରବୃତ୍ତି ଆମ ସେନାବାହିନୀକୁ ଯୁଦ୍ଧ ପାଇଁ ପ୍ରଚୋଦିତ କରିବ ନାହିଁ ।

ବିଶ୍ୱସଂଘ ପ୍ରତିଷ୍ଠା ହେଉଛି ସର୍ବାଧିକ ଜନପ୍ରିୟ ଏବଂ ସମସ୍ତ ମୁକ୍ତ-ଚିନ୍ତକମାନଙ୍କ ପାଇଁ ନିକଟତମ ଶ୍ରେୟ ବସ୍ତୁ । ଲେଖକ ତାହା ବିଷୟରେ ବିଶଦ ବ୍ୟାଖ୍ୟା କରିଛନ୍ତି ଏବଂ ତଥାକଥିତ ''ଲିଗ୍ ଅଫ୍ ନେଶନ୍'' ର ସେ ସୁନ୍ଦର ସମାଲୋଚନା କରିଛନ୍ତି ।

୫୭୧ (୫୭୨) ପଦର ପାଦଟୀକାରେ ଲେଖକ ସଂକ୍ଷିପ୍ତ ହେଲେ ହେଁ ପଦ୍ଧତି ବିଷୟକ ପ୍ରଶ୍ନ ଉଠାଇଛନ୍ତି । ସେ କହିଛନ୍ତି, ''ଏଭଳି ଏକ ରାଜ୍ୟ ଶାରୀରିକ ହିଂସାତ୍ମକ ବିପ୍ଳବ ଦ୍ୱାରା ଅଣାଯାଇ ପାରିବ ନାହିଁ । ବହିରଂଗ ସ୍ତରରୁ ଏହା ସମାଜ ଉପରେ ଚାପି ଦିଆଯାଇପାରିବ ନାହିଁ । ଏହା ଅନ୍ତରଙ୍ଗ ସ୍ତରରୁ ବୃଦ୍ଧି ପ୍ରାପ୍ତ ହେବ । ଏହା ବିବର୍ତ୍ତନର ପ୍ରକ୍ରିୟାର କ୍ରମବିକାଶ ପର୍ଯ୍ୟାୟରେ ପୂର୍ବକଥିତ ମତେ ଜନସମାଜକୁ ଶିକ୍ଷା ପ୍ରଦାନ କରାଯିବା ଦ୍ୱାରା ସମ୍ଭବ ହୋଇପାରିବ ।'' ଏହି ବାକ୍ୟରେ କୌଣସି ଅସଂଗତି ନାହିଁ । ଏହା ନିଶ୍ଚିତ ରୂପେ ନିର୍ଦ୍ଦୋଷ, କିନ୍ତୁ ପୂର୍ଣ୍ଣରୂପେ ଏହା ବ୍ୟାଖ୍ୟା କରାଯାଇ ନଥିବାରୁ କେତେକ ପ୍ରମାଦପୂର୍ଣ୍ଣ ବିଚାର ଏବଂ ତାହାଠାରୁ ମନ୍ଦ ହେଲେ ଅସ୍ପଷ୍ଟ ସନ୍ଦିଗ୍ଧତାର କାରଣ ହୋଇପାରେ । ଏହି ବାକ୍ୟରୁ କଅଣ ବୁଝିବାକୁ ହେବ ଯେ ଏଲ୍.ରାମଶରଣ ଦାସ, ବଳପ୍ରୟୋଗରେ ବିଶ୍ୱାସ

କରିଥିବା ମତରୁ ଓହରି ଯାଇଛନ୍ତି ? ସେ କଅଣ ଜଣେ ପ୍ରାଚୀନପନ୍ଥୀ ଅହିଂସା-ଧର୍ମବିଶ୍ୱାସୀ ବ୍ୟକ୍ତି । ନା, ତାହା ବୁଝାଉ ନାହିଁ ।

ଉପରଲିଖିତ ବାକ୍ୟ କଅଣ ବୁଝାଉଛି, ମୁଁ ତାହା ଏଠାରେ ସ୍ପଷ୍ଟ କରିଦେଉଛି- କ୍ରାନ୍ତିକାରୀ ବ୍ୟକ୍ତିମାନେ ଅନ୍ୟମାନଙ୍କ ଠାରୁ ବେଶ୍ ଅଧିକ ବୁଝିଛନ୍ତି ଯେ ସମାଜବାଦୀ ସମାଜ ହିଂସାତ୍ମକ ପନ୍ଥାରେ ପ୍ରତିଷ୍ଠା କରିହେବ ନାହିଁ, ଏବଂ ତାହା ସମାଜ ଭିତରୁ ହିଁ ବିବର୍ତ୍ତିତ ହେବ । ଲେଖକଙ୍କ ମତ ହେଉଛି ଯେ ଶିକ୍ଷାକୁ ହିଁ ସେଥିପାଇଁ ଏକମାତ୍ର ଅସ୍ତ୍ର ଭାବରେ ପ୍ରୟୋଗ କରାଯିବା କଥା । କିନ୍ତୁ ସମସ୍ତେ ଏହା ସହଜରେ ଉପଲବ୍ଧି କରିପାରିବେ ଯେ ଏଠାରେ ପ୍ରଚଳିତ ଶାସନ ବ୍ୟବସ୍ଥା କିମ୍ବା ବସ୍ତୁତଃ ସକଳ ପୁଞ୍ଜିବାଦୀ ସରକାର ଏଭଳି ପ୍ରଚେଷ୍ଟାକୁ ସାହାଯ୍ୟ କରିବାକୁ ଯିବେ ନାହିଁ, ବରଂ ତାକୁ ନିର୍ଦ୍ଦୟ ଭାବରେ ଦମନ କରିବେ । ତାହେଲେ ତାଙ୍କ 'ବିବର୍ତ୍ତନ' କି ଫଳ ପ୍ରଦାନ କରିବ ? ଆମେ ବିପ୍ଳବୀମାନେ ଶାସନ କ୍ଷମତାକୁ ଆମ ହସ୍ତଗତ କରିବାକୁ ଏବଂ ଗୋଟାଏ କ୍ରାନ୍ତିକାରୀ ଶାସନ ସଂଗଠିତ କରି ସାରିଲା ପରେ ତାହାର ସମସ୍ତ ଶକ୍ତି ଓ ବୈଭବକୁ ଜନସାଧାରଣଙ୍କ ଶିକ୍ଷାଲାଗି ବିନିଯୋଗ କରିବାକୁ ଚାହୁଁଛୁ । ରୁଷ୍ ଦେଶରେ ଯେପରି ଆଜି ତାହା ହୋଇପାରିଛି । କ୍ଷମତା ହସ୍ତଗତ କରିସାରିଲା ପରେ ରଚନାତ୍ମକ କର୍ମ ପାଇଁ ଶାନ୍ତିପୂର୍ଣ୍ଣ ଉପାୟ ଅବଲମ୍ବନ କରାଯିବ; ଏବଂ ପ୍ରତିବନ୍ଧକକୁ ବଳପ୍ରୟୋଗ କରି ଚୂର୍ଣ୍ଣୀଭୂତ କରାଯାଇପାରିବ । ଯଦି ଲେଖକ ଏହା ହିଁ କହୁଥାନ୍ତି, ଆମେ ତାଙ୍କ ସାଂଗରେ ସମ୍ପୂର୍ଣ୍ଣ ଏକମତ ଅଟୁ । ମୋର ଦୃଢ଼ ବିଶ୍ୱାସ ଅଛି, ସେ ତାହାହିଁ କହିଛନ୍ତି ।

ମୁଁ ଦୀର୍ଘତର ଭାବରେ ଏ ଗ୍ରନ୍ଥ ବିଷୟରେ କହିଚାଲିଛି । ବରଂ ମୁଁ ତାହାକୁ ସମାଲୋଚନା କରିଛି । କିନ୍ତୁ ମୁଁ ତହିଁରେ କିଛି ହେଲେ ପରିବର୍ତ୍ତନ ଆଣିବାକୁ ଚାହୁଁନାହିଁ, କାରଣ ଏ ଗ୍ରନ୍ଥର ଐତିହାସିକ ମୂଲ୍ୟ ଅଛି । ୧୯୧୪-୧୯୧୫ ର କ୍ରାନ୍ତିକାରୀମାନଙ୍କ ଧାରଣା ଏଥିରେ ଲିପିବଦ୍ଧ ହୋଇଛି ।

ବିଶେଷକେରି ଯୁବକମାନଙ୍କ ପାଇଁ ଏ ଗ୍ରନ୍ଥକୁ ମୁଁ ଦୃଢ଼ତାର ସହିତ ଅନୁମୋଦନ କରୁଛି, କିନ୍ତୁ ଗୋଟିଏ ସତର୍କ ବାଣୀ ସହିତ । ଦୟାକରି ଏହି ଗ୍ରନ୍ଥକୁ ଅନ୍ଧଭାବରେ ଅନୁସରଣ କରିବାକୁ ପଢ଼ନ୍ତୁ ନାହିଁ ଏବଂ ଯାହା ଲେଖା ହୋଇଛି ତାହାକୁ ଅବିଚାରିତ ଭାବରେ ଗ୍ରହଣ କରନ୍ତୁ ନାହିଁ । ତାହାକୁ ପଢ଼ନ୍ତୁ, ସମାଲୋଚନା କରନ୍ତୁ, ସେ ବିଷୟରେ ଚିନ୍ତା କରନ୍ତୁ ଏବଂ ତାହା ସାହାଯ୍ୟରେ ନିଜର ଭାବନାକୁ ସଂଗଠିତ କରିବା ପାଇଁ ଚେଷ୍ଟା କରନ୍ତୁ ।

Printed at Shivam Offset Press, A-12/1 Naraina Indl. Area, Phase-I, New Delhi-110 028

ଭଗତ ସିଂହ ଭାରତର କେବଳ ସର୍ବଶ୍ରେଷ୍ଠ ସ୍ୱାଧୀନତା ସଂଗ୍ରାମୀ ଓ କ୍ରାନ୍ତିକାରୀ ସମାଜବାଦୀମାନଙ୍କ ମଧ୍ୟରୁ ଜଣେ ନଥିଲେ; ସେ ଥିଲେ ପ୍ରାରମ୍ଭକାଳରେ ଅନ୍ୟତମ ମାର୍କ୍ସବାଦୀ ଚିନ୍ତାନାୟକ ଓ ସେହି ଆଦର୍ଶଗ୍ରାହୀ ବ୍ୟକ୍ତିତ୍ୱ। ସେ କାରାଗାରରେ ଥିବାବେଳେ ଚାରିଖଣ୍ଡ ପୁସ୍ତକ ଓ ଖଣ୍ଡେ ପ୍ରଚାରପତ୍ରିକା ରଚନା କରିଥିଲେ। ସେହି ଚାରିଖଣ୍ଡ ପୁସ୍ତକକୁ କାରାଗାରରୁ ଚୋରାଭାବରେ ଅଣାଯାଇଥିଲେ ହେଁ ତାହା ଦୁର୍ଭାଗ୍ୟବଶତଃ ହଜିଯାଇଛି। ସୌଭାଗ୍ୟବଶତଃ ସେହି ପ୍ରଚାର ପତ୍ରିକାଟି, **'କାହିଁକି ମୁଁ ଜଣେ ନାସ୍ତିକ'**, ନିଜ ଜୀବନବଳିଦାନ ଦେବାର କିଛି ଦିନ ବା କିଛି ସପ୍ତାହ ପୂର୍ବରୁ ତାଙ୍କ ପିତାଙ୍କ ପାଖରେ ଗୁପ୍ତରେ ପହଞ୍ଚିଯାଇଥିଲା। **'ଦି ପିପୁଲ'** ପତ୍ରିକାରେ ତାଙ୍କ ପିତାଙ୍କ ଦ୍ୱାରା ତାହା ୧୯୩୧ ମସିହା ଜୁନ୍ ମାସରେ ପ୍ରକାଶିତ ହେଲା। ଜଣେ ପୁରୁଖା କ୍ରାନ୍ତିକାରୀ ରାମ ଶରଣ ଦାସ ଭଗତ ସିଂହଙ୍କୁ ତାଙ୍କ **'ଡ୍ରିମ୍‌ଲାଣ୍ଡ'** କବିତାଗୁଚ୍ଛର ଗୋଟିଏ ମୁଖବନ୍ଧ ଲେଖିଦେବା ପାଇଁ ଅନୁରୋଧ କରିଥିଲେ। ଏ ଦୁଇଟିଯାକ ଲେଖାରୁ ଭଗତ ସିଂହଙ୍କର ମାନସିକ ଗୁଣବତ୍ତା ପ୍ରକାଶିତ ହେଉଛି। ତାଙ୍କର ବ୍ୟାପକ ଅଧ୍ୟୟନ, ଜଟିଳ ସମସ୍ୟାଗୁଡ଼ିକୁ ବୁଝିପାରିବା ଶକ୍ତି ଏବଂ ତା'ପରେ ତାହାକୁ ସରଳ ଓ ବୋଧଗମ୍ୟ ଭାଷାରେ ଉପସ୍ଥାପନ କରିପାରିବାର ଦକ୍ଷତା ଥିଲା।

ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଭଗତ ସିଂହଙ୍କ ଜନ୍ମ ଶତବାର୍ଷିକୀ ଏବଂ ଦେଶମାତୃକା ଲାଗି ଜୀବନବଳିଦାନର ପଞ୍ଚସ୍ତରି ବର୍ଷ ପୂର୍ତ୍ତି ଉପଲକ୍ଷେ, ସେହି ଦୁଇ ରଚନା ଓ ତତ୍‌ସଂଲଗ୍ନ ପ୍ରଫେସର ବିପିନ ଚନ୍ଦ୍ରଙ୍କ ମୁଖବନ୍ଧକୁ ଗର୍ବର ସହିତ ଭାରତର ଜନସାଧାରଣଙ୍କୁ ଅର୍ପଣ କରୁଛି। ପୁସ୍ତକଟିର ଅନୁବାଦକ ପ୍ରଫେସର ହୃଦାନନ୍ଦ ରାୟ ଓଡ଼ିଆ ଭାଷାରେ ଜଣେ ବିଶିଷ୍ଟ ଲେଖକ, ବାଗ୍ମୀ ଓ ଅନୁବାଦକ ଭାବେ ସୁପରିଚିତ।



ଟ. 25.00 ISBN 978-81-237-5060-6

ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ